# ଲୁହା ଶିକୁଳି

ନାଟ୍ୟକାର—ଶ୍ରୀ ଆନନ୍ଦ ଶଙ୍କର ଦାସ



ପ୍ରକାଶକ - କଳିଙ୍ଗ ଗ୍ରନ୍ଥ ମନ୍ଦିର
ବାଙ୍କାବଜାର କଟକ-୨

ମୁଦ୍ରାକର :—

**ଏମ୍. କେ. ନାଶାଦ**

କଳିଙ୍ଗ ଆର୍ଟ ପ୍ରେସ୍

କେଶରପୁର, କଟକ-୭୫୩୦୦୧

ନୂତନ ମୁଦ୍ରଣ :—

ବିଜୟା ଦଶମୀ, ୧୯୭୮

ପ୍ରଚ୍ଛଦପଟ୍ଟ ଶିଳ୍ପୀ :—

**ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି**

ମୂଲ୍ୟ :—

**ଛଅଟଙ୍କା ପଚିଶ ପଇସା**

ଯାହାଙ୍କ ପ୍ରେରଣା ମୋତେ ଲେଖନୀ
ଧରାଇ ପାରିଛି ତାଙ୍କର ଚରଣ ତଳେ
ମୋର ଅମାନିଆ ଲେଖନୀଟି
ଥୋଇଲି ।

। ଇତି ।

ଆନନ୍ଦ ଶଙ୍କର

# ନିଜକଥା

ଶ୍ରଦ୍ଧେୟ ବନ୍ଧୁ ଶ୍ରୀକୃଷ୍ଣଚନ୍ଦ୍ର ଧଳ (ଜେଲର, ସମ୍ବଲପୁର ଜେଲ), ତାଙ୍କର ଏଠା ରହଣି ମଧ୍ୟରେ ଅନୁରୋଧ କଲେ ଅପରାଧ ଓ ଅପରାଧୀ ମୂଳକ ଗୋଟିଏ ନାଟକ ଲେଖିବା ପାଇଁ—ବନ୍ଦୀର ମୂଳଦୁଆ ପର୍ଯ୍ୟନ୍ତ ସେ ଦେଲେ ନିଜେ—ଆଗପଛ ନ ବୁଝି ବିରାଟ ସମସ୍ୟାକୁ ଧରି ମୁଁ ଅଣନିଃଶ୍ୱାସୀ ହୋଇ ପଡ଼ିଥାଏ—ଧଳବାବୁଙ୍କର ଉତ୍ସାହ ଓ ପ୍ରେରଣା ସାଙ୍ଗକୁ ସୁନିପୁଣ ନିର୍ଦ୍ଦେଶକ ବନ୍ଧୁ ନିରଞ୍ଜନ ଶତପଥିଙ୍କର ସୁଚୋଶିତ ନିର୍ଦ୍ଦେଶନା ଓ ସର୍ବୋପରି "ଜନତା'ର କଳାକୁଶଳୀ ଅଭିନେତା ଓ ଅଭିନେତ୍ରୀମାନଙ୍କର ହୃଦୟସ୍ପର୍ଶୀ ଅଭିନୟ ଫଳରେ **ଲୁହା ଶିକୁଳି**ର ସୃଷ୍ଟି । ସେମାନଙ୍କଠାରେ ତାଙ୍କର ପ୍ରିୟ ଓ ଦରିଦ୍ର ନାଟ୍ୟକାର ଗଭୀର କୃତଜ୍ଞତା ଜଣାଉଛି ।

କଠୋର ଆଇନ ଓ ନିର୍ମମ ଶାସ୍ତି ବିଧାନ କରି ମଧ୍ୟ ଦେଶରୁ ଅପରାଧ କିମ୍ବା ଅପରାଧୀ ସଂଖ୍ୟା ଲୋପ କରାଯାଇ ପାରିନି କିମ୍ବା ପାରିବନି—ଏ ସିଦ୍ଧାନ୍ତରେ ଉପନୀତ ହୋଇ ବିଶ୍ୱ ଆଜି ନୂତନ ତଥ୍ୟର ସନ୍ଧାନ ପାଉଛି—ତେଣୁ ଆଜି "ଜେଲ ସଂସ୍କାର" "ମୁକ୍ତବନ୍ଦୀ ଶିବିର" ପ୍ରୟୋଜନ ହୋଇଛି । ଆଦର ଯତ୍ନ ପାଇଲେ ଜ୍ଞାନ-ବିବେକହୀନ ପଶୁପକ୍ଷୀଙ୍କୁ ଯଦି ଆୟତ୍ତ କରାଯାଇପାରେ, ଦୋଷବହୁଳ ମଣିଷକୁ ସଂଶୋଧନ କରି ଅବାଟରୁ ବାଟକୁ ଆଣି

ହେବ ଦୟା, କ୍ଷମା, ସ୍ନେହ ଓ ମମତା ବିନିମୟରେ—ଦେଶବାସୀଙ୍କ ଠାରେ "ଲୁହା ଶିକୁଳି"ର ଏତିକି ମାତ୍ର ନିବେଦନ ।

ନାଟକର ସଙ୍ଗୀତ ରଚନା କରିଛନ୍ତି ଅନ୍ତରଙ୍ଗ ବନ୍ଧୁ ନରସିଂହ ମହାପାତ୍ର ଓ ସ୍ୱର ସଂଯୋଜନା କରିଛନ୍ତି ଜନପ୍ରିୟ ବେତାର ଶିଳ୍ପୀ ଶ୍ରୀ ଭୁବନେଶ୍ୱର ମିଶ୍ର ଓ ଶ୍ରୀ ଅକ୍ଷୟ କୁମାର ମହାନ୍ତି । ନୃତ୍ୟ ପରିଚାଳନା କରିଛନ୍ତି ଶ୍ରୀ ବଟକୃଷ୍ଣ ସେଣ—ସେମାନଙ୍କ ଠାରେ ମୁଁ ଋଣୀ ।

ଶେଷରେ ଦେଶବାସୀଙ୍କର ଶୁଭ ଆଶୀର୍ବାଦକୁ ଏକମାତ୍ର ସମ୍ବଳ କରି ରହିଲି । ଇତି ।

ପୁରୁଣା ହାଟସାହି, ବାରିପଦା । } ବିନୀତ **ନାଟ୍ୟକାର**

# ଲୁହା ଶିକୁଳି

## ଶୁଭାରମ୍ଭ ରଜନୀ

ତା ୧୬-୯-୬୦ ରିଖ

ପରିବେଷକ ... ଜନତା ରଙ୍ଗମଞ୍ଚ, କଟକ-୨

ନାଟ୍ୟକାର ... ଶ୍ରୀ ଆନନ୍ଦ ଶଙ୍କର ଦାସ

ନିର୍ଦ୍ଦେଶକ ... ଶ୍ରୀ ନିରଞ୍ଜନ ଶତପଥି

"ସହକାରୀ" ... ଶ୍ରୀ ଜଗନ୍ନାଥ ପ୍ରସାଦ ମିଶ୍ର

ସଙ୍ଗୀତ ରଚନା ... ଶ୍ରୀ ନରସିଂହ ମହାପାତ୍ର

ସଙ୍ଗୀତ ନିର୍ଦ୍ଦେଶକ ... ଶ୍ରୀ ଭୁବନେଶ୍ୱର ମିଶ୍ର

ସ୍ୱର ସଂଯୋଜନା ... ଶ୍ରୀ ଅକ୍ଷୟ କୁମାର ମହାନ୍ତି

ନୃତ୍ୟ ପରିକଳ୍ପନା
ଓ ପରିଚାଳନା ... ଶ୍ରୀ ବଟକୃଷ୍ଣ ସେଣ

ସଙ୍ଗୀତ ପରିଚାଳନା ... ଶ୍ରୀ ହରେକୃଷ୍ଣ ମହାନ୍ତି
ଶ୍ରୀ ଚନ୍ଦ୍ରଧର କୁଅଁର
ଶ୍ରୀ ଦିଲ୍ଲୀପ କୁମାର ଦାସ
ଶ୍ରୀ ବୈଷ୍ଣବ ଚରଣ ସ୍ୱାଇଁ
ଶ୍ରୀ ଲକ୍ଷ୍ମୀଧର ସାହୁ

ଆଲୋକ ସମ୍ପାତ ... ଶ୍ରୀ ତ୍ରୈଲୋକ୍ୟନାଥ ଦାଶ

ସହକାରୀ ... ଶ୍ରୀ ଶୁମାଣି କୁମାର ସିହ୍ନା

ମଞ୍ଚ ରୂପ ... ଶ୍ରୀ କେ. ଲକ୍ଷ୍ମୀନାରାୟଣ ଆଚାରୀ

ମଞ୍ଚ ପରିଚାଳନା ... ଶ୍ରୀ ବୃନ୍ଦାବନ ବେହେରା
ଶ୍ରୀ ମଙ୍ଗରାଜ ପରିଡ଼ା

ସ୍ମାରକ ... ଶ୍ରୀ ପ୍ରଫୁଲ୍ଲ କୁମାର ମିଶ୍ର
ଶ୍ରୀ ଶରତ ଚନ୍ଦ୍ର ମହାନ୍ତି

ନୃତ୍ୟାଂଶେ  କୁମାରୀ ସରସ୍ୱତୀ
ରୁକ୍ମିଣୀ ଦେବୀ ଓ ବାସନ୍ତୀ ଦେ

# ଭୂମିକାରେ

## ପୁରୁଷ

ବିଶ୍ୱମୋହନ—ନିରଞ୍ଜନ ଶତପଥି
ବଟୁବାବୁ—ଚକ୍ରଧର କୁଅଁର
କଳ୍ପତରୁ — ନଟବର ସେଣ
ଭିକାରୀ—ତୈଳୋକ୍ୟ-ନାଥ ଦାସ
ପଶୁପତି — ଜଗନ୍ନାଥ ପ୍ରସାଦ ଗିରି
ସ.ଇ.—ଦିଲ୍ଲୀପ କୁମାର ଦାସ
ଦାଗୀ ବୁଢ଼ା—ରାମଚନ୍ଦ୍ର ପ୍ରତିହାରୀ
କନେଷ୍ଟବଲ—ମଙ୍ଗରାଜ ପରିଡ଼ା
ସ୍ୱପ୍ନକୁମାର — ଭୋଳାନାଥ ଦାସ
ଶଙ୍କର୍ଷଣ — ଶରତ କୁମାର ମହାନ୍ତି
ଭଦ୍ରଲୋକ(୧) ଉପେନ୍ଦ୍ର ନାଥ ସିଦ୍ଧା
(୨) ତୈଳୋକ୍ୟ ନାଥ ଦାସ
ଭୋଲୁ — ଅନିରୁଦ୍ଧ ରାଉତରାୟ
ମାଗୁଣି — ଭାସ୍କର ଶତପଥି
ରୋଗୀ(୧)ଉପେନ୍ଦ୍ର ନାଥ ସିଦ୍ଧା
ବାବୁଆ — ସୁବୋଧ ଘୋଷ
,, (୨) ତୈଳୋକ୍ୟନାଥ ଦାସ

## ସ୍ତ୍ରୀ

ଲିଲି —କୃଷ୍ଣାମଣି ଦେବୀ
ଜଲି —ବାସନ୍ତି ମଞ୍ଜରୀ ଦେବୀ
ମୀନା—କୃଷ୍ଣାକୁମାରୀ ଦେବୀ
ବିଶୁନା—ଘାନମଣୀ ଦେବୀ

# ପ୍ରଥମ ଅଙ୍କ

## ୧ମ ଦୃଶ୍ୟ

(ପରଦା ଘୁଞ୍ଚିଗଲା, ଦେଖାଗଲା ଭଙ୍ଗାଘର, ତା ଆଗରେ ବଣଜଙ୍ଗଲ, ଭଙ୍ଗା କାନ୍ଥ ଭିତର ଦେଇ ତାଭିତରର କେତେକାଂଶ ଘର ଦେଖା ଯାଉଥିଲା । ଭିତରେ ବସିଛି ଜଣେ ଲୋକ, ସାମାନ୍ୟ ଆଲୋକରେ ଦେଖା ଯାଉଥାଏ—କ'ଣ ଗୁଣ୍ଡାଏ ସେ ଖାଇ ଚାଲିଛି ଏବଂ ଭଙ୍ଗା ଗ୍ଲାସରେ ମଝିରେ କ'ଣ ପିଉଛି ଓ ମଝିରେ ମଝିରେ ଶବ୍ଦ ମଧ୍ୟ କରୁଛି)

ବିଶ୍ୱମୋହନ—(ଭିତରକୁ ଆସି ଘରଟିର ଶୋଚନୀୟ ପରିସ୍ଥିତି ଦେଖି ଚାରିଆଡ଼କୁ ଲକ୍ଷ୍ୟ କରି କବାଟର ତାଲାଟିକୁ ଟାଣିବାକୁ ଯିବାବେଳେ ଭଙ୍ଗା କାନ୍ଥ ଭିତରୁ ଗୋଟେ ସାପ ଦେଖାଗଲା, ସେ ଶୀଘ୍ର ଉଠି ଦୂରେଇ ଆସି କାନ୍ଥର ଭଙ୍ଗା ଅଂଶ ଭିତର ଦେଇ ଦେଖିଲେ ଗୋଟେ ଅଦ୍ଭୁତ ବେଶର ଲୋକ ବସି କ'ଣ ଖାଇ ଚାଲିଛି) ଟିକେ ଶୁଣିବ !

ଦାଗୀ—(ଭଙ୍ଗା ଫାଙ୍କରେ ଝୁଙ୍କିଲା ପୁଣି ନିଜ କାମରେ ଲାଗିଲା)

ବଣ୍ଟୁ—ଦୟାକରି ଟିକେ ଶୁଣ !!

ଦାଗୀ—(ପୁଣିଗୃହିଁଲା)

ବଣ୍ଟୁ—ଟିକେ ବାହାରକୁ ଆସିବ !!

ଦାଗୀ— ଭକ-(ଜୋରରେ ଚକ୍କାର କରି ଉଠିଲା)

ବଣ୍ଟୁ— (ଭୟକରି) ଏ ଘରେ ଯେଉଁମାନେ ଥିଲେ ସେମାନେ କୋଉଠି ଅଛନ୍ତି କହି ପାରିବ ?

ଦାଗୀ— (ଭଙ୍ଗା ବାଟରେ ବାହାରକୁ ଆସି ବଣ୍ଟୁକୁ ଭଲ କରି ଗୃହିଁଲା ।

ବଣ୍ଟୁ—ଏଇଟା ମୋ ଘର । ଦେଢ଼ବର୍ଷ ହେଲା ମୁଁ ଏଠି ନ ଥିଲି—

ଦାଗୀ—କୁଆଡେ ଯାଇଥିଲୁ ?

ବଣ୍ଟୁ—ମୋର, ମା, ଭାଇ, ଭଉଣୀଙ୍କୁ ଛାଡି ଜେଲ ଯାଇଥିଲି

ଦାଗୀ—ଜେଲ··· ।

ବଣ୍ଟୁ—ହଁ, ଗୋଟିଏ କେଶରେ ମୁଁ ଜେଲ ଯାଇଥିଲି—ଆଜ ମୁଁ ଜେଲରୁ ଫେରୁଛି ।

ଦାଗୀ—ଦାଗୀ ଆସାମୀ ? ସାବାସ, ହାଃ-ହାଃ ହାଃ-ହାଃ । ଆ-ଆ ଖାଇବୁ ଆ— ।

ବଣ୍ଟୁ—କ'ଣ ?

ଦାଗୀ—ମଦ-ମାଂସ, ପୁଷ୍ଟିକର ଖାଦ୍ୟ, ରକ୍ତ ତାଜା ହେବ, ଦେହରେ ଶକ୍ତି ବଢ଼ିବ, ମନରେ ଦମ୍ଭ ଆସିବ । ଆ ଖାଇବୁ ଆ—

ବଣ୍ଟୁ—ନା ନା, ମୋତେ କ୍ଷମାକର । ମୁ ସେ ସବୁ ଖାଏନା । ମୋ ମା, ଭାଇ ଭଉଣୀ କୋଉଁଠି ଅଛନ୍ତି ଜାଣିଛ ?

ଦାଗୀ—ଜାଣେ, କହିବ ନାହିଁ ।

ବଣ୍ଟୁ—କାରଣ ?

ଦାଗୀ—ସେମାନଙ୍କ ପାଇଁ କି ବ୍ୟବସ୍ଥା କରି ଯାଇଥିଲୁ ? କିଏ ତାଙ୍କର ସାହା ଭରସା ଥିଲି ? କେହି ଥିଲି ? ଥିଲି ?

ବିଶ୍ଟୁ—କି ହିଁକି, ମୋର କଳ୍ପତରୁ ମଞ୍ଜୁସା ?

ଦାଗୀ—(ହସି) ସମସ୍ତେ ସୁଖର ସାଥୀ । ବିପଦ ବେଳେ କେହି ଫେରି ଚାହିଁବେନି, ଆ—ଆ—

ବିଶୁ—ନା ନା, ତୁମେ ଯାଅ, ମୁଁ ଚାଲି ଯାଉଛି । (ଚାଲିଯାଉଥିଲେ ଦାଗୀ ଧରି ପକାଇ)

ଦାଗୀ—କୁଆଡେ ଯିବୁ ? କ'ଣ କରିବୁ ? ଚୋରି କି ଡକାୟତି ?

ବିଶୂ—ନା ନା, ତୁମେ ଜାଣନା । ମୁଁ ଚୋର କି ଡକାୟତ ନୁହେଁ । ପରିସ୍ଥିତିର ତାଡ଼ନାରେ ମୁଁ ଚୋରି କରିଥିଲି । ସେଥିପାଇଁ ମୁଁ ଦଣ୍ଡ ପାଇଛି । ପୁଣି ଦୁନିଆରେ ମୁଁ ନିଜକୁ ପ୍ରତିଷ୍ଠିତ କରିବି ।

ଦାଗୀ—ପ୍ରତିଷ୍ଠା ! ହାଃ-ହାଃ-ହାଃ—ଦୁନିଆ ଘୋଷଣା କରିବ ତୁ ଚୋର—ସମାଜ ତତେ ନିଆଁ ପାଣି ବନ୍ଦକରି ଦବ ।

ବିଶୁ—ମୁଁ ସମସ୍ତଙ୍କର ଧାରଣା ବଦଳେଇ ଦେବି ।

ଦାଗୀ—ନା, ତୁ ପାରିବୁନି । ତୁଣ୍ଡ ବାଇଦ ଆଗରେ ତୋର ଅସ୍ତିତ୍ୱ ରହିବ ନାହିଁ । ତୁ ଅଥର୍ବ, ପଙ୍ଗୁ, (useless)

ବିଶୁ—କାହିଁକି ?

ଦାଗୀ—ତୁ ଜେଲ ଫେରନ୍ତା ଦାଗୀ । ଆ ଚାଲିଆ, ତୋର ପ୍ରତିଷ୍ଠା ପାଇଁ ଦରକାର ଟଙ୍କା—ଅପର୍ଯ୍ୟାପ୍ତ ଟଙ୍କା ।

ବିଶୁ—କିନ୍ତୁ ଏତେ ଟଙ୍କା ମୁଁ ପାଇବି କୋଉଁଠୁ ?

ଦାଗୀ—ହାଁ-ନେ, ଧର— (ଛୁରିଟି ଦେଲା) ଖୁନ୍—ମର୍ଡର— ବଞ୍ଚିଯିବୁ ।

ବିଶୁ—(ଭୟରେ) ଏଁ—ହତ୍ୟା ?

ଦାଗୀ—ହୁଃ, ହୁଃ, ହୁଃ,—ଶଇତାନର ହତ୍ୟା—ମଣିଷର ନୁହେଁ—

ବଶୁ—ଏଁ—!!

ଦାଗୀ—ଜଙ୍ଗଲ ହେଇ ଯାଇଛି—ଶଇତାନ ଖେଳୁଛି, ତାର କୋପ ଦୃଷ୍ଟିରେ ତୁ ବଞ୍ଚି ପାରିବୁନ । ନେ—

ବଶୁ—ଏଁ—

ଦାଗୀ—ହେଃ, ଏ···ଏ···ବଞ୍ଚିବାକୁ ଚାହୁଁ ? ଚାହୁଁ ଭଉଣୀର ମଙ୍ଗଳ ? ଚାହୁଁ ବୁଢ଼ୀ ମାକୁ ସୁଖି କରିବାକୁ ? ଶଇତାନ ସାଙ୍ଗରେ ଘାତମତ ଯୁଦ୍ଧ, ଲଢେଇ । ତା ପୁଣି ଜଙ୍ଗଲ ଭିତରେ, ଅଝାଡ଼ ଜଙ୍ଗଲ—ହାଃ-ହାଃ-ହାଃ—(ବଶୁ ଫେରି ଯାଉଥିଲା, ତାକୁ ଧରି ପକେଇ ),—ହେଃ··ଏ···ଏ··· ତୋ ନାଁ କଣ ? ଉଁ—

ବଶୁ—ବଶି,ମୋହନ ।

ଦାଗୀ—ବ-ଶି-ମୋ-ହ-ନ । ହେଃ ଏଇଟା ଗୋଟାଏ ନାଁ ? ଏ ନା'ଟା ତୋର ବଦଳେଇ ଦେଇ—ନାଁଟାରେ ତାକତ୍ ଦରକାର—ସ୍ପିଡ଼୍ ଦରକାର—ମେସିନ୍‌ଗନ୍‌ର ସ୍ପିଡ଼୍— ବଶି,ମୋହନ—ମାଇଚିଆ, ବୋକା, ଛେଳି—ଗଧିଆ ବାଘ ମଧ୍ୟ ତାକୁ କଞ୍ଚା ଗିଳି ଦେବ—( ହସିଲା )— ଆ, ମୋ ପାଖରେ ରହିବୁ । ମୁଁ ତୋର ରୂପ ବଦଳେଇ ଦାଣ୍ଡିଆ ଭଳି ବଞ୍ଚି, ରହିବାର ବ୍ୟବସ୍ଥା କରିଦେବି । କେହି କେହି ତୋତେ ଚିହ୍ନି ପାରିବେନି ।

(ଟାଣି ଟାଣି ନେଇ ଯାଉଥିଲେ)

ବଶୁ—(ଟାଣି ହୋଇ ଯାଉ ଯାଉ)—ନା ନା, ମୋର ଦରକାର ନାହିଁ । ମୁଁ ସେମିତି ବଞ୍ଚିବାକୁ ଚାହେଁନା— ଚାଲିଗଲା—(ଦାଗୀ ହୋଃ-ହୋଃ ହୋଇ ହସି ଉଠିଲା)

## ୨ୟ ଦୃଶ୍ୟ

(କଳ୍ପତରୁ ବାବୁଙ୍କଘର ଅଳନ୍ଦ, ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କୁ ପାଛୋଟି ନେଉଥାନ୍ତି ପଶୁପତି—ହଠାତ୍ ପ୍ରବେଶ କଲେ ବଶୁ)

ପଶୁ—ଆରେ ବଶୁ ଯେ !

ବଶୁ—ନମସ୍କାର ।

ପଶୁ—ତାପରେ କେତେବେଳେ ଆସିଲ ?

ବଶୁ—ଏଇତ ସିଧା ସିଧା ଆସୁଚି । ଆମଘର ପାଖରେ କାହାକୁ ନ ଦେଖି ଭାବିଲି ସେମାନଙ୍କୁ ସବୁ ମଉସା ଆଣି ନିଜଘରେ ରଖିଛନ୍ତି ।

ପଶୁ—ମଉସା ! ହାଃ ! ହାଃ ! ଶୁଣ ବଶୁ ତୁମ ମଉସା ଆଉ ଆଗ ମଉସା ହୋଇ ନାହାନ୍ତି—ଯାତଲକ୍ଷ ଟଙ୍କା ଲଟେରୀ ଜିଣି ଖାଲି ଘରଦ୍ୱାର ତ ତାଙ୍କର ବଦଳି ଯାଇନି—ମନ ବି ବଦଳି ଯାଇଚି--ସେ ଯାହା ହେଉ, ମୋର କ୍ଷମତାନୁସାରେ ତୁମ ମା', ଭାଇ, ଭଉଣୀଙ୍କୁ ମୁଁ ସାହାଯ୍ୟ କରିଛି-ବର୍ତ୍ତମାନ ମୁଁ ମୋର ଜଣେ ବନ୍ଧୁଙ୍କ ଘରେ ଆଣି ରଖେଇ ଦେଇଚି ।

ବଶୁ—ଆପଣ କ'ଣ କହୁଛନ୍ତି ପଶୁପତି ? ମଉସା ସବୁ ଜାଣି ବି କିଛି କଲେନି ?

ପଶୁ—ଶୁଣ ବଶୁ ! ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ ଲୋକଙ୍କୁ ଉତ୍ତର ନାହିଁ—ତୁମ ପରିବାରକୁ ମୁଁ ସାହାଯ୍ୟ କରୁଚି ବୋଲି ମୋ ଉପରେ ବି ତାଙ୍କର ଭଲ ଧାରଣା ନାହିଁ । ଅବଶ୍ୟ ମୁହଁ ଖୋଲି କେବେ କିଛି କହି ନାହାନ୍ତି ।

ବଶୁ—ଆପଣ ଠିକ କହୁଛନ୍ତି ତ ପଶୁପତି ବାବୁ ?

ପଶୁ—ଆରେ, ମିଛ କହି ମୋର ଲାଭ କ'ଣ ? ସେ ଯାହାହେଉ ସେଠାରେ ଗଲେ ଖାଲି ଯାହା ଆଦର ତ ପାଇବ ଆଉ କିଛି

ନୁହେଁ—ଦେଢବର୍ଷ ପରେ ମା' ଭାଇ, ଭଉଣୀଙ୍କୁ ଦେଖା ନ କରି ଅବଶ୍ୟ ବଡ଼ ମୁହଁରେ ଧାଇଁ ଆସିଥିଲ ମଉସାଙ୍କ ପାଖକୁ—ହେଲେ କଳ୍ପତରୁ ବାବୁ ମୋ ହାତରେ ଖବର ପଠେଇଛନ୍ତି ତୁମକୁ ଫେରେଇ ଦେବା ପାଇଁ—ଆଜି ଲିଲି ଦେବୀଙ୍କ ଜନ୍ମଦିନ ଉପଲକ୍ଷେ ବଡ଼ଲୋକ'ମାନେ ନିମନ୍ତ୍ରିତ ହୋଇ ଆସିଚନ୍ତି—ତେଣୁ ତୁମର ଉପସ୍ଥିତିଟା କୁଆଡ଼େ ତାଙ୍କ ସମ୍ମାନ ଉପରେ ଆଞ୍ଚ ଆଣିବ—ଏଣୁ...

ବିଶୁ—ମଉସା ଏକଥା କହିପାରିଲେ ପଶୁପତି ବାବୁ !

ପଶୁ—ଆରେ, ସେ ଯଦି ତୁମର ଅନ୍ତରର ସମ୍ପର୍କ ଅସ୍ୱୀକାର କରନ୍ତି, ଜୋର କରି ସେ ସମ୍ପର୍କ ଦାବୀ କରିବା କ'ଣ ଉଚିତ ହବ ? ହଁ ବିଶୁ, ତୁମେ ବର୍ତ୍ତମାନ ଯାଅ—ତୁମେ ଆସିବ ବୋଲି ତୁମ ମା' ଭାଇ, ଭଉଣୀଙ୍କ ଆଖିରେ ଆଜିକୁ ସାତଦିନ ହେବ ନିଦ ନାହିଁ । ତୁମେ ଚାଲିଯାଅ—ଆମଘର ଆଗରେ ଯୋଡ଼ି ଛକଟା ପଡ଼ିବ—ସେଇ ଛକରୁ ନଦୀ ଆଡ଼କୁ ଯୋଡ଼ି ରାସ୍ତାଟା ଯାଇଚି—ସେଇ ମୁଣ୍ଡ ଘରଟା ଗୋଟେ ବୋଲି ତ ଘର—

ବିଶୁ—ଆସି ସାରିଚି ଯେତେବେଳେ ମଉସାଙ୍କ ସହିତ ଟିକିଏ ଦେଖା ଦେଇ ପାରନ୍ତିନି ପଶୁବାବୁ ?

କଳ୍ପ—(ପ୍ରବେଶ କରି) ଦେଖା କରିବା ପାଇଁ ଏଇଟା ଉପଯୁକ୍ତ ସମୟ ନୁହେଁ ବିଶୁ—ସେଥିପାଇଁ ମନାକରି ପଠେଇଥିଲି ।

ବିଶୁ—ମଉସା !

କଳ୍ପ—ଏତେ ତରତର ହେଇ ମତେ ଦେଖାକରି ଆସିବା କ'ଣ ଦରକାର ଥିଲା ବିଶୁ ?

ପଶୁ—ମୁଁ ସବୁକଥା ବୁଝେଇ ଦେଇଛି । ସିଏ ବର୍ତ୍ତମାନ ଚାଲିଯିବେ ।

କଲ୍ଗୁ—ହଁ ବଶୁ, ଲିଲିର ଜନ୍ମଦିନ ପାଇଁ ବହୁ ବଡ଼ ବଡ଼ ଲୋକ ଘରେ ମୋର ଭର୍ତ୍ତି ହୋଇଗଲେଣି—ଏଣୁ ତୁମର ଉପସ୍ଥିତିଟା ହୁଏତ—ଆଜ୍ଞା, ପଶୁପତି ବାବୁ ! ବଶୁ ପାଇଁ ଗୋଟାଏ କୋଉଠି ଅଲଗା ଜାଗା କରି ବସାଇ ଦେଇ ପାରନ୍ତନି ? ଲିଲିର ଜନ୍ମ ଦିନଟାରେ ଆସିଯାଇଛି ଯେତେ ବେଳେ ସେମିତି ଫେରି ଯିବାଟା ।

ପଶୁ—ହଉ ଆସ, ଆସ ବଶୁ ।

ବଶୁ—ଥାଉ ଆଜ୍ଞା, ମୋର ପେଟ ପୂରି ଗଲାଣି--ହେଲେ ମଉସା, ମୁଁ ଆଜି କ'ଣ ଭାବି ଆସିଥିଲି—ଆଉ ଆସି କ'ଣ ଦେଖିଛି? ଦୁନିଆଁଟା ଯେ ଏତେ ବଦଳି ଯାଇ ପାରେ—ଏଇଟା ମୋର ଧାରଣାର ବାହାରେ ଥିଲା ।

କଲ୍ଗୁ—ନିଜ କଥାରୁ ବୁଝି ପାରୁଥିବୁ—ପାଠ ଶାଠ ପଢ଼ି ତୋଭଳି ଜଣେ ଶାନ୍ତଶିଷ୍ଟ ପିଲା ଯଦି ଗୁଣ୍ଡାଗିରି କରିପାରେ, ତା ତୁଳନାରେ ମୁଁ ଆଉ ବେଶୀ ବଦଳିଛି କ'ଣ ? ତା ଛଡ଼ା ମୁଁ ପ୍ରସ୍ତୁତ ଅଛି ତୋର ଏଭଳି ଆକ୍ଷେପ ଶୁଣିବାକୁ— କାରଣ ତୁ ବୁଝିପାରିବୁନି ତୋର ନିଜର ପୋଜିସନ୍ ବଜାରରେ କ'ଣ—ପଶୁପତି ବାବୁଙ୍କଠାରୁ ଶୁଣିପାରୁ—

ପଶୁ—ସତରେ ବଶୁ, ତୁମେ ଜେଲ ଗଲା ପରେ ପରେ ତୁମ ନେଇ ସହରରେ ଇମିତି ଗୋଟାଏ ଆବହାଓ୍ୱା ସୃଷ୍ଟି ହୋଇଛି, ଯାହାକି ତୁମେ ନିଜେ କଳ୍ପନା କରି ପାରିବନି । ତୁମ ପଛରେ ରହିଛି ପୋଲିସର କଡ଼ା ନଜର······

ଜନ ସାଧାରଣଙ୍କର ଭୃକୁଞ୍ଚନ-ତେଣୁ ନିଜର ସମ୍ମାନ ଦୃଷ୍ଟିରୁ—

କଳ୍ପ—ହଁ ବନ୍ଧୁ, ଏଣିକ ତୋର ସମ୍ମାନ ନେଇ ତୁ ରହ-ମୋର ସମ୍ମାନ ନେଇ ମତେ ରହିବାକୁ ଦେ—

(ଜଣେ ଭଦ୍ରଲୋକ ଭିତରୁ ଆସିଛନ୍ତି)

ଭଦ୍ରଲୋକ—(ଭିତରୁ) ନାଇଁ ନାଇଁ ଆପଣ ଆଉ ଅଟକାନ୍ତୁ ନାହିଁ—ମୋର ସମୟ ହୋଇଗଲାଣି—(ପଶିଆସି)—କଳ୍ପତରୁବାବୁ ଆପଣଙ୍କୁ ମିଶିବାକୁ ଖୋଜୁଥିଲେ—(ଚାଲି ଯାଉ ଯାଉ ବନ୍ଧୁକୁ ଦେଖି)—ଆରେ—ଆରେ—ଏ ସେଇ ବନ୍ଧୁନା ! ଯେ ସରକାରୀ ଟଙ୍କା ଚୋରି କରି ଜେଲ ଯାଇଥିଲା ?

କଳ୍ପ—ହିଁ, ସେଇ ମହାତ୍ମା ।

ଭଦ୍ରଲୋକ—ଆରେ ବାପ୍‌ରେ ବାପ୍ ? ଏ ଗୁଣ୍ଡାଙ୍କୁ ଦେଖିଲେ ଘର ଭୟ ହୁଏ—(ଚାଲିଗଲେ)

କଳ୍ପ—ଶୁଣିଲୁତ ବନ୍ଧୁ ? ଆଉ କଣ ଜାଣିବାକୁ ଇଚ୍ଛା ଅଛି କହ ?

ବନ୍ଧୁ—ହେଲେ ଆପଣ ତ ଜାଣନ୍ତି ମଉସା, କୋଉ ପରିସ୍ଥିତିରେ ପଡି ସେ ଦିନ ମୁଁ Office cashରେ ହାତ ଦେବାକୁ ବାଧ୍ୟ ହୋଇଥିଲି ।

କଳ୍ପ—ଜାଣେ, ଜାଣେ, ହେଲେ ସେ ଜାଣିବାଟା କେବଳ ଆମ ଦୁଇଜଣଙ୍କ ଭିତରେ··ଲୋକେ ସେ କୈଫିୟତ ଗ୍ରହଣ କରିବାକୁ ଯିବେ କାହିଁକି ?

ବନ୍ଧୁ—ଆପଣ ସେଦିନ ହଜାରେ ଟଙ୍କା ନେଇଁ ନ ଥିଲେ ମୁଁ Office cashରୁ ଟଙ୍କା ଆଣି ବାପାଙ୍କ ପଛରେ ଖର୍ଚ୍ଚ

କରିଥାନ୍ତି କାହିଁକି ? ନା ବାପା ବ ଠିକ୍ ସମୟରେ ଟଙ୍କା ଅଭାବରୁ ମରିଥାନ୍ତେ କାହିଁକି ?

କଲ୍ଲୁ—ମାନୁଛ, ତୁ ଯେବେ କେବେ ମତେ ହଜାରେ ଟଙ୍କା ଦେଇଥିଲୁ—ହେଲେ, ତାର ପାଞ୍ଚ ଦଶଗୁଣ ଫାଇଦା ଉଠେଇ ନେଇଛନ୍ତି ତୋର ମା, ଭାଇ, ଭଉଣୀ—ତାଙ୍କୁ ସାହାଯ୍ୟ କରି କରି ମୋର ଅବସ୍ଥା ଇମିତି ଅସମ୍ଭାଳ ହୋଇ ଗଲା, ଶେଷକୁ ଘରର ଦରଜା ବନ୍ଦ କରି ବି ନିସ୍ତାର ପାଇଲିନି ।

ବଶୁ—ଦୁଃଖ କରନ୍ତୁନି ମଉସା—ମୁଁ ବଞ୍ଚି ଥିଲେ ଆପଣଙ୍କର ସେ ଋଣ ନିଶ୍ଚୟ ଶୁଝି ଦେବି ।

କଲ୍ଲୁ—ହିଁ ସୁଝିବୁନି କାହିଁକି ? କାହା ଗଳା କାଟିବୁ—କାହା ଘର ଲୁଟ୍ କରିବୁ—(ଗୃହକୁ ଯାଉଥିଲେ)

ବଶୁ—ମଉସା ! ଥାଉ ମଉସା ଥାଉ । ଇମିତି ଗୋଟେ କଦର୍ଯ୍ୟ ରୂପ ଆପଣଙ୍କ ଭିତରେ ଲୁଚି ରହିଥିଲା ବୋଲି ଆମେ କେହି ହେଲେ ଜାଣି ପାରି ନଥିଲୁ—ବାସ୍ତବିକ ଆପଣ ଜଣେ ଭାଗ୍ୟବାନ୍ ଲୋକ । ତା ନ ହେଲେ ମୋ'ରି ଟଙ୍କାରେ ବଡ଼ଲୋକ ହୋଇ ମତେ ବଡ଼ଲୋକି ଦେଖେଇବାର ସୌଭାଗ୍ୟ ଆପଣଙ୍କର ଆସି ନ ଥାନ୍ତା ।

କଲ୍ଲୁ—(ରାଗି ଯାଇ) ! ପରିପତ୍ତି ! ଏଇଟାକୁ ଏଠୁ ଧକ୍କା ମାରି ମାରି ବାହାରେ ଛୁଡ଼ି ଦିଅଛ ।.ଜେଲରୁ ଫେରିବା ପରେ ଏଇଟାର ମୁଣ୍ଡ ଖରାପ ହେଇ ଗଲାଣି— ।

ବଶୁ—ମଉସା ! ଏତେଟା ଅମଣିଷ ପରି ବ୍ୟବହାର କରନ୍ତୁନି— ସମୁଦ୍ର କୂଳର ବାଲି ଘର ପରି ଗୋଟାଏ ଢେଉରେ ସେ ସବୁ ନିଶ୍ଚିହ୍ନ ହେଇଯିବ, ଏ କଥା ଭୁଲି ଯା'ନ୍ତୁନି— ଦୁନିଆର ଗତି ବଡ଼ ପ୍ରଖର ।

କଲ୍ଲୁ—ଓଃ, ବଶ୍ ! ଚୁପକର କହୁଚି—ନ ହେଲେ ତୋର ଏଇ କଥା ଉପରେ ତତେ ବର୍ତ୍ତମାନ ଆଉ କଣ୍ଟିଦନ ପାଇଁ ଜେଲ ଭିତରେ ରଖି ଦେଇ ଆସିବି ।

ବଶ—ଥାଉ ଆଜ୍ଞା, ଅଯଥାରେ ମୁଣ୍ଡ ଗରମ କରନ୍ତୁନି—ମୁଁ ଚାଲିଯାଉଚି—ମନ ଅବଶ୍ୟ ଚାହୁଁଚି ଆପଣଙ୍କ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କ ସାମନାରେ ଆପଣଙ୍କର ପ୍ରକୃତ ରୂପଟି ଦେଖାଇଦେବାକୁ—ନହେଲେ ଆଜି ଭଳି ଦିନରେ ମୁଁ ଏତେଟା ଅମଣିଷ ହୋଇ ପାରୁନି—ହଉ ଆସୁଚି—ନମସ୍କାର । ଛି...ଛି...(ଚାଲିଗଲେ)

କଲ୍ଲୁ—(ବିବ୍ରତ ହୋଇ)ଚୁକର ବାକର ଏତେ ଲୋକ ଥାଉ ଥାଉ ଗୋଟାଏ ଲୋକ ଆସି ଘର ଭିତରେ ଇମିତି ଗୋଟେ ପରିସ୍ଥିତି ସୃଷ୍ଟି କରି ଦେଇଗଲା ? ଭଦ୍ରଲୋକ ଗହଳି ଭିତରେ ଯଦି ଲୋକଟା ଆଜି ପଶି ଯାଇଥାନ୍ତା —ମୋର ମାନ ସମ୍ମାନ ଆଉ ରହନ୍ତା ?

ପଶ—ସେଥିଲାଗି ଆପଣ କହିବା ମାତ୍ରେ ମୁଁ ତାକୁ ବୁଝେଇ ସୁଝେଇ ବିଦାକରି ଦଉଥିଲି—ଏ ପରିସ୍ଥିତିଟା କିନ୍ତୁ ଭଲ ହେଲାନି ଆଜ୍ଞା ।

କଲ୍ଲୁ—ଆଉ କ'ଣ ଅଖିତରେ ମୁଁ କେବେ କ'ଣ ଗୋଟାଏ କଥା ଦେଇ ଥିଲି ବୋଲି ତାକୁଇ ରକ୍ଷା କରିବାକୁ ଯାଇ ମୋର ଏକମାତ୍ର ଝିଅକୁ ନେଇ ସେଇ ଜେଲ ଫେରନ୍ତା ବେକରେ ବାନ୍ଧି ଦେଇଥାନ୍ତି ? ବୁଝିଲ ପଶୁପତି ବାବୁ ! ସତ୍ୟ ରକ୍ଷା କରିବାକୁ ଯାଇ ମୁଁ ଯୁଧିଷ୍ଠିର ଭଳି ବୋକା କମ୍ବା ହରିଶ୍ଚନ୍ଦ୍ର ଭଳି ସର୍ବହରା ହେବାକୁ ରାଜି ନୁହେଁ ।

ପଶୁ—ନାହିଁ ଆଜ୍ଞା, ମୁଁ ଆଦୌ ସେ କଥା କହୁ ନାହିଁ ଯେ, ବଶୂ ଚଳକଣା କିଛି ସୁବିଧା ଜନକ ନୁହେଁ—ତାର ମା, ଭାଇ, ଭଉଣୀ ବଡ଼ ଶ୍ରେଷ୍ଠ ପ୍ରକୃତିର—ଯାହାର ଖାଇବେ ତା'ର ଗୁଣ ଗାଇ ବୁଲିବା ତାଙ୍କର କାମ—ବାହାରେ ଆପଣଙ୍କର ଯିମିତି ଦୁର୍ନାମ ନକରନ୍ତି ସେଥିଲାଗି ମୁଁ ବରାବର ସେମାନଙ୍କୁ ଗୋଟିଏ ଗୋଟିଏ ଜଗିଛି—ତା' ଛଡ଼ା ବଶଟା ଗୁଣ୍ଡେଦୌଡ଼ି କାଟି ଦେଇ ଜେଲରୁ ଫେରିଲା—ଲାଜ ଲଜ୍ୟା ଆଗ ପଛ ତାର କିଛି ନାହିଁ । ଯଦି ଆପଣ ତାର ସମ୍ବନ୍ଧ ଥିଲେ—ଆପଣଙ୍କର ଉନ୍ନତିରେ ସେ ହିଂସୁକ ହୋଇ ଉଠିବା ଅତି ସ୍ୱାଭାବିକ—ତା ଛଡ଼ା ଆଜିକାର ପରିସ୍ଥିତିର ପ୍ରତିଶୋଧ ନବାକୁ ଯାଇ ଅତୀତରେ ଯଦି ସେ ଲିଲି ଦେବୀଙ୍କ ସହିତ ତାର ସମ୍ବନ୍ଧ ହୋଇଥିଲା ଏଇକଥା ଯଦି ସେ ଗାଇ ବୁଲେ—

କଲ୍ପ—ତୁମେ ତାଂ ହେଲେ କ'ଣ ଭାବୁଚ ?

ପଶୁ—ଅନ୍ୟ କେହି କିଛି ଭାବନ୍ତୁ ନ ଭାବନ୍ତୁ । ସ୍ୱପ୍ନ କୁମାରଙ୍କ କାନରେ କଥାଟା ପଡ଼ିଲେ କିନ୍ତୁ—

କଲ୍ପ—ବାସ୍ତବିକ ପଶୁପତି, ମୋର ତା ହେଲେ ଭୁଲ ହୋଇଗଲା ।

ପଶୁ—ଛାଡ଼ନ୍ତୁ ଆଜ୍ଞା, ଭବିଷ୍ୟତ ପାଇଁ ଏଣିକି ଟିକିଏ ସାବଧାନ ହବାକୁ ପଡ଼ିବ ।

ଭଲୁ—(ବାହାରୁ ଆସି) ବାବୁ ! ବାବୁ ! ଆଜ୍ଞା କିଏ ଜଣେ ସାଇବ ଆପଣଙ୍କୁ ଖୋଜୁଛନ୍ତି । ତାଙ୍କ ସାଙ୍ଗରେ ଜଣେ ମେମ୍ ସାହେବ ମଧ୍ୟ ଅଛନ୍ତି ।

କଲ୍ପ—ତୁମେ ଭିତରକୁ ଯାଅ ପଶୁପତି—Mr. Roy ବୋଧହୁଏ ଆସିଗଲେ— (ବାହାରକୁ ଚାଲିଗଲେ)

# ୩ୟ ଦୃଶ୍ୟ

(ବଶଘର—ବଶୂମା ଖଟ ଉପରେ ଏକ ଧ୍ୟାନରେ ବସିଛନ୍ତି—ବଶୂକୁ ଅପେକ୍ଷା କରି ହତାଶ ହୋଇ ପଡ଼ିଲେଣି—ପାପ ମନରେ ତାଙ୍କର ବାରଆଡ଼ୁ ବାରକଥା ଆସୁଛି-କ'ଣ ଭାବ ଭିତରକୁ ଲକ୍ଷ୍ୟ କରି ଡାକିଲେ

ବଶୂମା—ମୀନା ! ମୀନା । ଆଲୋ ତତେ କଣ ଶୁଭୁନି ?

ମୀନା—(ଭିତରୁ ଆସି), କାହିଁକି ଏମିତି ଥରକୁ ଥର ଡାକୁଚୁ କହିଲୁ ?

ବଶୂମା—ଆଲୋ ଭାତ ବସେଇଲୁ ? ମୋ ମନ ଡାକୁଚି ବଶୂ ଆଜି ମୋର ନିଶ୍ଚେ ଆସିବ ।

ମୀନା—ତିନିଦିନ ହେଲା ନିଜେତ ଦନ୍ତଗଞ୍ଜି ହଉଚୁ, ମତେ ବି ହଇରାଣ କରି ମାରୁଚୁ । ଭାଇ ଅସିଲେ ପଖାଳ କି ଜଳଖିଆ ଖାଇ ଦେବେନି ।

ବଶୂମା—ନାଇଁଲୋ ମୀନା ! କେତେ ବାଟରୁ ଅଣ୍ଡା କାକର ଖାଇ ଧାଇଁ ଧାଇଁ ଆସୁଥିବ—ଜଳଖିଅ ପଖାଳରେ ତାର ଶରଧା ନାହିଁ—ଗରମ ଭାତ ମୁଠାକରେ ତାର ଭାରି ଲୋଭ—

ମୀନା—ତିନିଦିନ ହେଲା ତ ନଅଭୁଣ ଛ'ଭଜା କରି ରଖିଲୁ, କ'ଣ ହେଲା ? ଅଯଥାରେ ପରିଶ୍ରମ, ଲୋକସାନ । କାଲି ଚୁଲିକି ଆଉ ହାଣ୍ଡି ଯିବନି—ଏକଥା ଖିଆଲ ରଖିଚୁ ତ ?

ବଶୁମା—ହଉ, ହଉ, ଲଣ୍ଡୁନଟା ଟିକିଏ ଦେଲୁ—ମୁଁ ଟିକିଏ ସାଇ ମୁଣ୍ଡରେ ଦେଖେଁ ।

ମୀନା—ଦୁନିଆରେ ତୁ ଏକା ପୁଅ ଜନ୍ମ କରିଚୁନା ଆଉ କେହି କରିଚନ୍ତି ? ଭାଇ ପିଲା ହୋଇଚନ୍ତି ଯେ ଘରଟାକୁ ଖୋଜି

ଆସି ପାରିବେନି—ସଞ୍ଜ ହେଲାଣି ଆସ, ତୁ ବୁଢ଼ୀଟା ଯାଇ କୋଉଠି ଖୋଜିବୁ କହିଲୁ ? ଏ ବୋଉ, ଆସିଲୁ—କ'ଣ ଗଣ୍ଡେ ଖାଇବୁ । ତୁ ପରା ଖାଇନୁ ।

ବଶୁମା—ନାଇଁ ମୀନା ! ମତେ ଏଇନେ ଭୋକ ଲାଗୁନି ।

ମୀନା—ପୁଅ ଘରକୁ ଆସିବ ବୋଲି ତ ଭୋକ ଶୋଷ ଛାଡ଼ି କିଛି ନାହିଁ ? କାଲିଠୁଁ ଘାଟ ଆଡ଼କୁ ବସୁଛୁ ଯେ ଖାଲି ଅଇଁଠା ହେଇ ଉଠୁଚୁ —ସକାଳୁ ତ କିଛି ଖାଇନୁ—ଖାଇବୁନି କାହିଁକି ?

ବଶୁମା—(କାନ୍ଦି) ସତେଲୋ ମୀନା ! ବାରଆଡ଼ୁ ପାପ ଚିନ୍ତା ଆସି ମନକୁ ଛୁଉଁଚି—ବୁଧବାର ପହଁଞ୍ଚିବା କଥା, ଆସି ତିନିଦିନ ବିତିଗଲା, କିଛି ଖବର ନାହିଁକି ଚିଠିର ଦେଖାନାହିଁ—

ମୀନା—ମଙ୍ଗଳବାର ଦିନ ଜେଲରୁ ମୁକୁଳିବାର ଥିଲା-ବାରିପଦାରୁ ଆସି ଏଠି ପହଞ୍ଚିବାକୁ ଦୁଇ ଚାରିଦିନ ଲାଗିବ—ତାଛଡ଼ା ଯଦି କିଛି ଅସୁବିଧାରେ ପଡ଼ି ଯାଇଥିବେ—

ବଶୁମା—ନାଇଁଲୋ ମୀନା । ତୁ ସବୁ କହ, ହେଲେ ସେ କଥା କହିନି । ପୁଅକୁ ମୋର ଭଲରେ ଭଲରେ ଆଣି ଠାକୁରେ ପହଞ୍ଚେଇ ଦିଅନ୍ତୁ—ବିଚରା ଢ଼େର ଶାସ୍ତି ପାଇଲାଣି—ତା ନ ହେଲେ ବଶୁ ମୋର ଯିମିତି ପିଲା, ଯେତେ ବଡ଼ ବିପଦରେ ପଡ଼ିଲେ ବି କାହାକୁ ମୁହଁ ଖୋଲି ପଦେ କହିବନି—ଉପାସ ରହିବ ପଛେ ମୁହଁ ଖୋଲି ମାଗିବନି—ସେଇଭଳି ପୁଅକୁ ଯେ ମୋର ଆଖି ଆଗରେ ଦଇବ ଶାସ୍ତି ଦଉଚି ମା ହେଇ ମୁଁ କିମିତି ସହିବି କହିଲୁ ? (କାନ୍ଦି ଉଠିଲେ)

ମୀନା—ବୋଉ ! ଆଲୋ ଇଏ କଣ ହଉଚି ? ତତେ ମୋ ରାଣ ବୋଉ—ତୁ ଚାଲ କ'ଣ ଗଣ୍ଡେ ଖାଇଦବୁ—ଦିନସାରା କିଛି

ଖାଇନୁ ବୋଲି ତତେ କେମିତି ଲାଗୁଚି—ଉଠ ବୋଉ, ମୋ ରାଣ ଗୁଲ, ଖାଇବୁ—

ବଶୁମା—ନାଇଁଲେ ମୀନା ନାଇଁ, ବଶୁକୁ ମୋର ନ ଦେଖିଲା ଯାଏ ମୁଁ ଅନ୍ନ ଜଳ ଛୁଇଁବିନି—ମତେ କିଛି ଭଲ ଲାଗୁନି ।

( ବାହାରୁ ଡ଼ାକଚନ୍ତି ବଶୁ )

ବଶୁ—ମୀନା ! ବାବୁଆ ! ବୋଉ !

ମୀନା—(ଆନନ୍ଦରେ) ବୋଉ ! ବୋଉ ! ଭାଇ ଆସିଲେଣି ।

ବଶୁମା—ଏଁ, ମୋ ବଶୁ ଆସିଚି—ବଶୁ ! ବଶୁ ! (ଆନନ୍ଦରେ ଅଧୀର ହୋଇ ଆଗେଇ ଯିବା ସମୟରେ, ବଶୁ ଆସି ମୁଣ୍ଡିଆ ମାରିଚି—ମା ତାକୁ ନେଇ ଖଟରେ ବସାଇ ତାର ଗାଲ ଆଉ କପାଳକୁ ଆଉଁସି ଦେଇ ଯାଉଥାନ୍ତି—ଆଖିରୁ ତାଙ୍କର ଲୁହ ମନା ନ ମାନି ବୋହି ଗୁଲିଥାଏ)

ବଶୁରେ ··ଦେହ ହାତ ତୋର କ'ଣ ହୋଇ ଯାଇଚିରେ ବଶୁ । ମୁଁ ନ ମରି କାହିଁକି ବଞ୍ଚି ରହିଚି—ତୋ ଭଳି ପୁଅକୁ ଏଇ ଅବସ୍ଥାରେ ଦେଖିବାକୁ ମତେ କ'ଣ ଭଗବାନ ବଞ୍ଚେଇଛନ୍ତି ? ଚଣ୍ଡାଳଟା ଦୁନିଆରୁ ଗୁଲିଗଲା··ହେଲେ ମୋ ପୁଅକୁ କଣ ନ କରି ଦେଇ ଗଲା—ତୋ ପରି ପୁଅକୁ ପୁଣି ଏତେ ଦହଗଞ୍ଜ ହବାକୁ ଥିଲା ? ହେ ଭଗବାନ ! ଏସବୁ ଦେଖି ତୁମ ଛାତି ଫାଟି ଯାଉନି ! ସତରେ କଣ ତୁମେ ଏଡେ ପଥର—(କାନ୍ଦିଲେ)

ବଶୁ—(କାନ୍ଦି) ଥାଉ ବୋଉ ଥାଉ—ତୁ ଆଉ କାନ୍ଦନା—ଯାହା ଭାଗ୍ୟରେ ଥିଲା ହୋଇଗଲା—ବୋଉ ! ମୋପରି କୁଳାଙ୍ଗାରକୁ ତୁ ଜନମରୁ ଚୋଟି ଚିପି ମାରି ଦେଇନୁ କାହିଁକି ? ଦେଢ଼ବର୍ଷ ଜେଲ ଭୋଗି ମୋର ମାନ, ସମ୍ମାନ

ସବୁ ଗଲା ଯାଇଚ ବୋଉ—ଆଉ କିଛି ନାହିଁ—ମଉସା ଯେବେ ହଜାରେ ଟଙ୍କା ନେଇ ନ ଥାନ୍ତେ, ମୋର କାହିଁକି ଏ ଅବସ୍ଥା ହୋଇଥାନ୍ତା ? ମୁଁ କାହିଁକି ଜେଲ ଯାଇଥାନ୍ତି ! ବୋଉ ! ଏସବୁ କଣ ହୋଇଗଲା ବୋଉ—(କାନ୍ଦି ଉଠିଲେ)

ବିଶୁମା—ଆଉରେ ବାପା ଥାଉ—ତୁ ଆଉ କାନ୍ଦନା—ସବୁ ଭାଗ୍ୟରେ ବାପା, ସବୁ ଭାଗ୍ୟ—ତୁ ଭୁଲିଯା ବାପା ତୁ ଭୁଲିଯା ।

ବିଶୁ—ବୋଉ ! ମୁଁ ଏବେ କୁଆଡ଼େ ଯିବି, କଣ କରିବି କହିଲୁ ? ଦାଣ୍ଡ ଲୋକେ ମୋତେ ଯିମିତି ନାକ ଟେକିଲେଣି, ସେଥିରେ ମୁଁ ଆଉ ମୁଣ୍ଡ ଟେକି ପାରିବିନି ବୋଉ—ମୋର ଅବସ୍ଥା ଯା ଇଚ୍ଛା ତା ହୋଇଗଲା, ମୁଁ ଏ ଦୁନିଆରୁ ସରିଗଲି ।

ମୀନା—ଭାଇ ! ତୁମେ କାନ୍ଦୁଚ—ବୋଉ କାନ୍ଦୁଚି—ଏସବୁ କ'ଣ ହଉଚି ? ତୁମେ ଯଦି ଇମିତି କାନ୍ଦିବ ଭାଇ, ଆମକୁ ବଳ ଦେବ କିଏ ? (କାନ୍ଦିଲା)

ବିଶୁ—ଉଠିଯାଇ ମୀନାର ଲୁହ ପୋଛି ମୀନା ! ମୁଁ ତୁମକୁ ବଳ ଦେବି ? ହଁ, ହଁ, ତୁ କାନ୍ଦନା ମୀନା, ତୁ କାନ୍ଦନା—ମୁଁ ସବୁ ସହି ପାରିବି ହେଲେ ତୋ ଆଖିର ଲୁହ ମୁଁ ଦେଖି ପାରିବି ନି । ତୁ କାନ୍ଦନା, ନା ନା ମୀନା ତୁ କାନ୍ଦନା—ମୋ ଜୀବନର ସବୁ ଶକ୍ତି ଖଟେଇ ଦେବି ତୋର ପାଇଁ—ତୁ କାନ୍ଦନା—

ମୀନା—ନା, ନା ଭାଇ ! ମୁଁ ଆଉ କାନ୍ଦିବି ନି । ଦେଢ଼ବର୍ଷ କାଳ ଛାତିକୁ ପଥର କରି ସବୁ ଦୁଃଖ ସହି ଆସିଥିଲି—ଆଜି ତୁମ ଆଖିରେ ଲୁହ ଦେଖି ମୁଁ ଆଉ କୋହ ସମ୍ଭାଳି ପାରିଲିନି ଭାଇ—ସବୁକଥା ମୋର ଗୋଟି ଗୋଟି ହୋଇ ମନେ ପଡ଼ିଗଲା —ବାବୁଆ ଘର ଛୁଆ ଯାଇ ଜଳଖିଆ ଦୋକାନରେ ପ୍ଲେଟ

ଉଠାଉଚ—ବୋଉ ଯାଇ ପର ଦୁଆରେ ବାସନ ମାଜୁଛି—ଆଉ ତୁମେ ଦେଢ଼ବର୍ଷ ପରେ ଆଜ ଜେଲରୁ ଫେରୁଛ—ତୁମେ କୁହ ଭାଇ, ଏ ସବୁ ଦେଖି ମୁଁ କାନ୍ଦିବାକୁ ଛଡ଼ା ଆଉ କଣ କରିବ ?

ବଶୁ—ମୀନା ! ତୁ କଣ କହିଲୁ ମୀନା ! ବାବୁଆ ଜଳଖିଆ ଦୋକାନରେ ପ୍ଲେଟ ଉଠାଉଚ, ବୋଉ ବାସନ ମାଜୁଛି—ମୀନା ! ଓଃ ଅନ୍ଧକାର ହୋଇ ବସିପଡ଼ି ପ୍ରକୃତରେ ଏ ସବୁ କ'ଣ ହୋଇଗଲା ମୀନା ! ହସ ଖୁସିର ସଂସାର ଆଜ ଆମର ପୋଡ଼ି ପାଉଁଶ ହୋଇଗଲା—ହେ ଭଗବାନ— !

ବଶୁମା—ବଶୁ ।

ମୀନା—ଭାଇ, ଭାଇ !

ବଶୁ—ମୀନା ! ମତେ ଗୁଡ଼ିଆଡ଼ ଖାଲି ଅନ୍ଧକାର ଦେଖା ଯାଉଚରେ—ମୋ ମୁଣ୍ଡଟା କ'ଣ ହୋଇ ଯାଉଚ—ନା—ନା ବୋଉ ! ତୁ ଆଉ ବାସନ ମାଜିବୁନି—ତୁ ଗୋଡ଼ ଉପରେ ଗୋଡ଼ ପକେଇ ବସିବୁ—ବାବୁଆକୁ ମୁଁ ପାଠ ପଢ଼େଇବି ବୋଉ—ସେ ବଡ଼ ମଣିଷ ହବ ।

ବଶୁମା—ସବୁ ହବରେ ବାପା ସବୁ ହବ । ତୁ ମୋର ଫେରି ଆସିଲୁଣି, ମୋର କଷ୍ଟ ଅଭାବ ରହିବନି—ତୁ ଗୁଲିଲୁ ଆଗ ଦୁଟା କ'ଣ ଖାଇବୁ ।

ବଶୁ—ଦୁଃଖ ଶୋଷ ସବୁ ଭୁଲି ଗଲିଣି ବୋଉ, ଆଉ କଷ୍ଟ ନାହିଁ—ଦେଢ଼ବର୍ଷ କାଳ ଜେଲ ଖଟି ଖଟି ମୁଁ ଯେତିକି କଷ୍ଟ ପାଇ ନଥିଲି—ଆଜି କଳୁତରୁ ମଉସାଙ୍କର ଅସଲ ରୂପଟି ଦେଖିବା ସଙ୍ଗେ ସଙ୍ଗେ ତୁମ୍ଭମାନଙ୍କ ଏ ଅବସ୍ଥା ଦେଖି ମୁଁ ପଥର ହୋଇ ଗଲିଣି ବୋଉ—ଆଉ କଣ ଖାଇବି ତୁ କହୁଚୁ ।

ମୀନା—କଲିକତାରୁ ମଉସା ଆଉ ମଣିଷ ହୋଇ ନାହାନ୍ତି ଝିଅ ! ସାତଲକ୍ଷ ଟଙ୍କା ଲଟେରୀ ଜିଣି ସେ ରାକ୍ଷସପାଲଟି ଯାଇଛନ୍ତି —ଆଉ ଲିଲି—ଆମକୁ ଦେଖିଲେ ସେ ଝରକା ଦରଜା ଗୁଡ଼ା ବନ୍ଦ କରି ଦେଉଚ—

ବଶୁମା—ସତରେ ବଶୁ ! ଟଙ୍କା ପାଇଲେ ମଣିଷର ମନ୍ତଗତି ଇମିତି ଯେ ବଦଳିଯାଏ, ଏ କଥା ମୋର ଧାରଣା ନ ଥିଲା ହେଲେ ସେ ବେଶୀଦିନ ନୁହଁରେ ବାପା ବେଶୀଦିନ ନୁହେଁ । ତୋର ଆଖି ଆଗରେ ତାଙ୍କର ସେ କୋଠାଘର ଦିନେ ମାଟିରେ ମିଶିଯିବ । ଭଗବାନଙ୍କର ବିଚାର କେବେ ହେଲେ ଭୁଲ ହବନି ।

ବଶୁ—ବାସ୍ତବିକ୍ ବୋଉ, ସବୁ ଭଗବାନଙ୍କର ପରୀକ୍ଷା— ତୁମରି ଜୟ ହେଉ ପ୍ରଭୁ ତୁମରି ଜୟ ହେଉ ।

—*—

## (୪ର୍ଥ ଦୃଶ୍ୟ)

(ସହରରେ ଗୋଟିଏ ଗଳିରାସ୍ତା—ପୂର୍ବ ଦୃଶ୍ୟର ପର ଘଟଣା —ଅନ୍ଧକାର ରାତି ସମୟ ପ୍ରାୟ ଦଶଟା—ପ୍ରବେଶ କରୁଛନ୍ତି ପଶୁପତି ଓ ଶଙ୍କର୍ଷଣ, ପଶୁପତି ହାତରେ ଗୋଟେ ବଡ଼ ଟିଙ୍ଗ୍)

ପଶୁପତି—ତୁମେ ଆଉ ଅଯଥାରେ ମୋ ସଙ୍ଗେ କାହିଁକି ଯିବ ଶଙ୍କର୍ଷଣ । ଦେଖିଲିଣି ସୋ'ରେ ପରିଶ୍ରମ ଖୁବ୍ କରିଚ, ପୁଣି ରାତି ବହୁତ ହେଲିଣି—

ଶଙ୍କର—ଖାଲି ଗୋଟିଏ ମିନିଟ ଆଜ୍ଞା—

ପଶୁ —ଘଣ୍ଟାଏ ପାଇଁ ବ ମୋର ଆପତ୍ତି ନ ଥିଲା । କିନ୍ତୁ ମୁଁ ଭାବୁଚ ଏତେ ରାତିରେ ନିସ୍ତୁଟିଆ ଗଳିରେ ତୁମେ ଏକା ଫେରିବ କିମିତି ?

ଶଙ୍କର—ପରବାୟୁ ନାହିଁ ଆଜ୍ଞା ସହରର ଅଧିକାଂଶ ଗଳିରେ କୋଉଠି କାହାଘର, କୋଉଠି ଭଙ୍ଗା ପୋଲ, କୋଉଠି ଖାଲ, ଢ଼ିପ ସବୁ ଆୟତ୍ତ କରି ଦେଇଚ । ବେଳେବେଳେ ଜୀବନ ମରଣର ସମସ୍ୟାରେ ପଡ଼ି କୋଉ ମାସରେ କୋଉ ଗଳିକୁ ଛାଡ଼ିବାକୁ ହୁଏ, କୋଉ ଗଳିରେ ଦିନରେ ନ ଯାଇ ରାତିରେ ଯିବାକୁ ହୁଏ । ଆଉ କୋଉ ଗଳିରେ ରିକ୍ସାରେ କଭର ଦେଇ ଯିବାକୁ ପଡ଼େ—

ପଶୁ—କିନ୍ତୁ କାହିଁକି ?

ଶଙ୍କର—ବୁଝିପାରୁ ନାହାନ୍ତି ସାର ! କାଳ, ବାକି, ଧାର, ଉଧାର ।

ପଶୁ—(ହସି) ଆଚ୍ଛା, ତୁମକୁ ଏତେ ଲୋକ ଧାର ଦଉଚନ୍ତି କିମିତି ଶଙ୍କର୍ଷଣ ?

ଶଙ୍କର—ଆଜ୍ଞା, ଯେଉଁଠା ଯେ ଦେଉଚନ୍ତି—ସେମାନଙ୍କର ବୋକାମୀ ହେଉ କିମ୍ବା ମୋର ଶତକ୍ଷଣତା ହେଉ—ଯୋଉଠିକି ଯାଇ ଯେତେବେଳେ ଯାହାକୁ ହାତ ପାତୁଚି ନାହିଁ ଶବ୍ଦ ନାହିଁ । ହଉ ଆଜ୍ଞା ଆଉ ଗୋଟିଏ ମିନିଟ୍, ଆଜି କାଲି ମହାତ୍ମାଙ୍କର ଜନ୍ମଦିନ ଉପଲକ୍ଷେ ଆମ ଅନୁଷ୍ଠାନ ପକ୍ଷରୁ ଯେଉଁ ଭେରାଇଟି ସୋ'ର ବ୍ୟବସ୍ଥା ହୋଇଥିଲା—ଆପଣଙ୍କୁ କିମିତି ଲାଗିଲା ?

ପଶୁ—ନାଃ, ସୁନ୍ଦର ହେଇଚ—ତୁମର ଅନୁଷ୍ଠାନ ଯେ ଦିନେ ଉନ୍ନତି କରିବ, ତାର ଗୋଟେ ନମୁନା ତୁମ୍ଭେମାନେ ଦେଖେଇଚ ।

ଶଙ୍କର—(ଉତ୍ସାହରେ)—ଆହୁରି ଭଲ ଦେଖାଇ ଥା'ନ୍ତୁ ସାର, କିନ୍ତୁ ସିନ୍ ଡ଼େକୋରେଟରଅ ଭାବ। କଳାକାରମାନଙ୍କୁ ଡ଼ାକିବାକୁ ଗଲେ ସେମାନଙ୍କର ଇଚ୍ଛା ନ ଥାଏ—ସେମାନଙ୍କର ଇଚ୍ଛା ଥିଲେ ଅଭିଭାବକ ମାନଙ୍କର ମତ ନ ଥାଏ। କଳାକାର ମାନଙ୍କର ଇଚ୍ଛା ଅଭିଭାବକ ମାନଙ୍କର ମତ ଥିଲେ ଆମ ଅନୁଷ୍ଠାନର ଯେ ଦୁଇ ଚାରି ଜଣ ଶିକ୍ଷକ ଅଛନ୍ତି—ତାଙ୍କ ଭିତରେ ମତର ଅମେଳ ହୁଏ। ଏଇସବୁ ଝିନ୍‌ଝଟ୍ ଭିତରେ ତବଲା ବଜେଇବା ଠାରୁ ଆରମ୍ଭ କରି-ଗୀତ ରଚନା, ସ୍ୱର ଦେବା ଇମିତି କି ଆର୍ଟିଷ୍ଟ ମାନଙ୍କର ଖିଆପିଆ, ନେବାଆଣିବା ବସାଉଠା' ସାଜସଜ୍ଜା, ମାନ-ଅଭିମାନ ସବୁରି ପାଇଁ ମୁଁ କେବଳ ଗୋଟେ ଲୋକ ସାର୍-ଘରୁ ଖାଇ ଘୋଡ଼ା ଆଗରେ ଦୌଡ଼ିବା କଥା। ନିଜେ ନ ବଞ୍ଚେ ବଞ୍ଚୁ ଆମର କଳା-ବଞ୍ଚୁ ଆମର ସଂସ୍କୃତି।

ପଶୁ—ହଉ ମତେ ଟିକେ ବଞ୍ଚାଅ-ମୁଁ ଏଥର ଯାଏଁ।

ଶଙ୍କର—ଯିବେ ସାରେ! ହଉ ଆସନ୍ତୁ—

(ପଶୁପତି ଚାଲିଗଲେ—ଅନ୍ୟ ଦିଗରୁ ଟିକିଏ ଗୋଳମାଳ ଶୁଣାଗଲା—ଶଙ୍କର୍ଷଣ ସେ ଆଡ଼କୁ ଲକ୍ଷକଲେ, ଦେଖିଲେ ବିଶୁର ଭାଇ "ବାବୁଆ" କୁ ଜଳଖିଆ ଦୋକାନି ମାଗୁଣୀ ମାରି ମାରି ଆଣୁଛି)

ମାଗୁଣୀ—ହାରାମଜାଦା, ଆଜ ମଜା ମୁଁ ଛଡ଼ାଉଛି ଚାଲ—

ବାବୁଆ—(କାନ୍ଦି) ନାଇଁ ମୁଁ କିଛି କରି ନାହିଁ—ତମ ଗୋଡ଼ ତଳେ ପଡୁଛି—ମତେ ଛାଡ଼ିଦିଅ—

ଶଙ୍କର—ଗୋଟିଏ ମିନିଟ ମାଗୁଣୀ ସାହୁ—ଗୋଟାଏ ନାବାଳକ

ପିଲା ଉପରେ ହିଂସାତ୍ମକ ଆଚରଣ କର ନାହିଁ, ଘଟଣାଟା ମୋତେ ବୁଝିବାକୁ ଦିଅ ।

ମାଗୁଣୀ—କଣ ବୁଝିବ ହେ ବାବୁ—ଚୋରକୁ ଆଗ ମାଡ଼— ପରେ ବିଚାର ।

ଶଙ୍କର—ଚୋର—ଗୋଟାଏ ମିନିଟ ମାଗୁଣୀ—ଏ ବୟସରେ ଚଳେ । ତମ ଶ୍ରୀକୃଷ୍ଣ, ଏ ବୟସରେ ଚୋର ଥିଲେ ବୋଲି ଯଶୋଦା ରାଣୀ ବାଡ଼ି ଖଣ୍ଡିଏ ଧରି ଗୋଡ଼େଇ ଗୋଡ଼େଇ ଜଗିଥିଲେ । ତୁମର ବାପୁଜୀ ଏଇ ବୟସରେ ତାଙ୍କ ବାପାଙ୍କ ପକେଟରୁ ହାତ ସଫେଇ କରୁଥିଲେ, ସୁତରାଂ ଯାଅ, ଛାଡ଼ିଦିଅ ।

ମାଗୁଣୀ—ଛାଡ଼ ଦେବ, ଏଇଟା ଏମିତି ଚାଲୁଙ୍ଗାଟା—କାଲି ସେମିତି ମୋର ପାଞ୍ଚ ସେର ରସଗୋଲା ନଷ୍ଟ କରି ଦେଲା— ପିଲାମାନେ ରାସ୍ତାରେ ବଲ ଖେଳୁଥିଲେ—ବାବୁ ଦୋକାନରେ ରହିବା ଲୋକ, ଗୋଡ଼ ଇମିତି ଗଲା କଲା ଯେ ଧାଇଁ ଯାଇ ବଲକୁ ଇମିତି ବାଗରେ ମାଇଲା ଯେ, ବଲ ଆସି ମୋର ରସଗୋଲା କଡ଼ାରେ । ମୋର ପାଞ୍ଚ ସେର ତଟକା ରସଗୋଲା ନଷ୍ଟ ହୋଇଗଲା ।

ବାବୁଆ—ନଷ୍ଟ ହୋଇନାହିଁ ଆଜ୍ଞା ! ସବୁ ବିକ୍ରୀ ହୋଇ ଯାଇଚି ।

ମାଗୁଣୀ—ନାଇଁ ଫିଙ୍ଗି ଦେଇଆନ୍ତି ? ଗରାଖମାନଙ୍କୁ ତ ଦେଇ ହବ ନାହିଁ—ଭାଗ୍ୟକୁ ଠାକୁର ମନ୍ଦିରର ଖଞ୍ଜାଟା ଥିଲା ବୋଲି ପଠେଇ ଦେଲି—

ଶଙ୍କର—ଗୋଟାଏ ମିନିଟ ମାଗୁଣୀ—କୋଉଠିକି ପଠେଇ ଦେଲ ? ମନ୍ଦିରକୁ—ସାବାସ ! ତୁମେ ପୁଣି ମନ୍ଦିରକୁ ଭୋଗ ଦବାପାଇଁ ନବାଚତ ହେଇଚ—ଖୁବ୍ ଭଲ କରିଚ ମାଗୁଣୀ ସାହୁ—

ସବୁ ମନ୍ଦିରଗୁଡ଼ିକ ତୁମର ତତ୍ତ୍ୱାବଧାନରେ ରହିବା ଉଚିତ ମୁଁ ଭାରତ ସରକାରଙ୍କୁ କହି ବନ୍ଦୋବସ୍ତ କରିଦେବି— ତା ହେଲେ ଭେଜାଲ ମାଲ ଖାଇ ଠାକୁର ଦେବତା ଗୁଡ଼ାକ କାମଳ ରୋଗର ମଜା ବୁଝିବେ ।

ମାଗୁଣୀ—ତୁମକୁ କିଏ ଡ଼ାକୁଚି ହେ ଭଲ ଲୋକ କରିବାକୁ ? ତୁମେ ପରା ଜଳଖିଆ ଖାଇ, ପଇସା ନ ଦେଇ ଗହଳ ଭିତରେ ଚାଲିଯିବା ଲୋକ—

ଶଙ୍କର—ଗୋଟାଏ ମିନିଟ ମାଗୁଣୀ । ବ୍ୟବସାୟୀର ଧର୍ମ ଗରାଖଙ୍କୁ ଈଶ୍ୱର ସମାନ ଦେଖିବା—ତାଙ୍କୁ ଅପମାନ ଦେବା ଠିକ୍ ନୁହେଁ ।

ମାଗୁଣୀ—ଯା' ହେ, ତୁମପରି ଦଶଟି ଗରାଖ ମୋର ଥିଲେ ମାସ ଭିତରେ ଦୋକାନରେ ଲାଲବତି ଜଳିଯିବ ।

ଶଙ୍କର—ଗୋଟାଏ ମିନିଟ ମାଗୁଣୀ ଆକ୍ଷେପଟା ତୁମର ଗଠନ ମୂଳକ ହେଉ ନାହିଁ ଖାଲିମତ ଧ୍ୱଂସ ମୂଳକ— କଥାବାର୍ତ୍ତାରେ ସଂଯତା ରକ୍ଷାକର—ମୁଁ ବର୍ତ୍ତମାନ ଚାଲିଲି—ହୁଏତ ବନ୍ଧୁ ଷଣ୍ଡରେ ପଡ଼ିବ—ଚେୟାରମେନ୍ ବାବୁ ଗୋଟାଏ ମିନିଟ—(ପ୍ରସ୍ଥାନ)

ମାଗୁଣୀ—ହଁ, ହଁ, ଯା, ଯା, ତୁମଭଳି କେତେ ଧୋବଲା ଠକଙ୍କୁ ଆମେ ଚିହ୍ନିଛୁ—ଆଠ ଅଣାର ଜଳଖିଆ ଖାଇଲେ, ସେ— ମାଗି ମାଗି ତିନିମାସ ହୋଇଗଲା ଦବାକୁ ନାହାନ୍ତି— (ବାବୁଆକୁ)—ଚାଲ୍ ଥାନାକୁ । ଥାନାରେ ନ ଦେଲେ ତୋର ରକ୍ଷା ନାହିଁ ।

ବାବୁଆ—ମୁଁ ତମ ଟଙ୍କା ନେଇନି, ମୋତେ ଛାଡ଼ିଦିଅ— (ବିଶୁର ପ୍ରବେଶ) ।

ବିଶୁ—ବାବୁ !!(ବାବୁଆ ତା ପାଖକୁ ଚାଲିଆସିଚି)

ବାବୁଆ—ଭାଇ……

ମାଗୁଣି—ଭାଇ କଣ କରିବ ? ହଇରେ ହାରାମଜାଦା ଟୋକା (ମାରିବାକୁ ଉଦ୍ୟମ)

ବଶୁ —(ବ୍ରେକ), ମାଗୁଣି ସାହୁ ! ଟିକେ ରହ ସମ୍ଭାଳି କାମ କର—ବାବୁଆ କଣ କରିଛି ତୁମର ?

ମାଗୁଣି—ଆଉ କଣ କରିବ ? ମୋ ଦୋକାନ କେସ ବାକ୍ସରୁ ପାଞ୍ଚ ଟଙ୍କା ଚୋରି କରିଛି—

ବଶୁ —ବାବୁଆ ତୁ ଚୋରି କରିଚୁ ?

ବାବୁଆ—ନାଇଁ ଭାଇ ମୁଁ କିଛି ଜାଣି ନାହିଁ ।

ମାଗୁଣି—କରେ ଭାଇକୁ ଦେଖି ସାହାସ ପାଇଗଲୁ—ଅଭ ପରା ଦୋକାନରେ ମାନଥିଲୁ—

ବଶୁ —ତୁ ମାନ ଥିଲୁ ବାବୁଆ—ସତ କହ । ତୁ ଚୋରି କରିଚୁ ?

ବାବୁଆ—ନାଇଁ ଭାଇ ମୁଁ ଚୋରି କରିନାହିଁ ।

ବଶୁ —ତାହେଲେ ଦୋକାନରେ ମାନିଲୁ କମିତି ?

ବାବୁଆ—ମତେ ବାନ୍ଧିକରି ବାଡ଼େଇବାରୁ ମୁଁ ମାନିଥିଲି ।

ମାଗୁଣି—ଦେଖ, ଦେଖ, ଗୁଣବନ୍ତ ଭାଇ କମିତି ବାଟେଇ କଥା କହୁଚି

ବଶୁ —(ପିଠି ଦେଖି)—ମାଗୁଣି ! ତୁମେ ପିଲଟାକୁ ଏମିତି ମାରିଚ?

ମାଗୁଣି—ମାରି ନାହିଁ, ମାରି ନାହିଁ ହେ । ତା ପିଠିରୁ ପରସ୍ତେ ଗୁଲି ଉତ୍ତର ଦେଇଥିଲେ ଭଲ ହୋଇଥାନ୍ତା ।

ବଶୁ —ଏତେ ସାହାସ ତୁମର ? ଜାଣ ଆଜ କାହା ପୁଅ ପିଠିରେ ତୁମେ ହାତ ଦେଇଚ ? ମୁଁ ଯଦି ତୁମ ପିଠିରୁ ବର୍ତ୍ତମାନ ଗୁଲି ଉତ୍ତର ଦିଏଁ ?

ମାଗୁଣୀ—ବାହା, ବାହା, ଭାରି ସାହସ । ପୁଅ ଜେଲରୁ ଘଣା ପେଲି ପେଲି ପହିଲଓ୍ୱାନ ହୋଇ ଆସିଛି ।

ବଣୁ —(ସହ୍ୟ କରି ନ ପାରି)—ମାଗୁଣୀ !!! (ମାଗୁଣୀ ଗଳାକୁ ଧରିଲା)

ମାଗୁଣୀ—ଆହେ, ଦଉଡ଼ ଆସ ହେ, ମତେ ମାରି ପକାଇଲା— (ଦୁଇଜଣ ଲୋକ ଦୌଡ଼ି ଆସିଲେ)

୧ମ —କଣ ? କଣ ? ଗଣ୍ଡଗୋଳ କାହିଁକି ?

ମାଗୁଣୀ—ଦେଖ ହୋ—ପୁଅର ଭାଇ ମୋ ଦୋକାନରୁ ତିରିଶ ଟଙ୍କା ଚୋରି କଲରୁ ମୁଁ ତାକୁ ଥାନାକୁ ନେଉ ଥିଲି —ବଡ଼ ଭାଇ ଆସି ମତେ ମାରିବାକୁ ତିଆରି—

୨ୟ —କୋଉ ପିଲା ହେ—ଏଇ ଟୋକା । ଯିଏ ତୁମ ଦୋକାନରେ ପେନ୍ଟ ଉଠାଉଛି । ଆରେ ! ଏଇଟା ତ ପକ୍କା ହାରାମି ଅଛି ।

୧ମ —କହୋ ବାବୁ କଥା କଣ ?

ମାଗୁଣୀ—ଆଉ କଥା କଣ ମୁହଁରୁ ବାହାରିବ କି ? ଜେଲରୁ ଆସି ପାଇକ ପଣିଆ ଦେଖାଇ ହଉଛି ।

୨ୟ —ଆରେ, ଆରେ, ଏ ଲୋକ ତ ଆଦୌ ଭଲ ନୁହେଁ । ହଇ ହେ ସେ ପରା ତୁମ ଭାଇକୁ ଦାନା ଦେଉଥିଲା—ପିଲାଟି ଚୋରି କଲା, ତାକୁ ଶାସନ କରିବାରୁ, ତୁମେ ଓଲଟି । ମାରିବାକୁ ଆସୁଛ ?

ମାଗୁଣି—ତୁମେମାନେ ସାକ୍ଷୀ ଥାଅ ବାବୁ—ମୁଁ ଅବ ଥାନାକୁ ଯାଉଛି—ପୁଣି ପୁଅ ଘଣା ପେଲିବାକୁ ମନ ହେଲାଣି ।

ବଣୁ —ମାଗୁଣୀ ଆଉ ବେଶୀ କଥା କୁହନା—ବାବୁଆ ତୁମର ଟଙ୍କା ଚୋରି କରିଛି ବୋଲି ପ୍ରମାଣ ଦେଇ ପାରିବ ?

୧ମ—ଆହେ ପ୍ରମାଣ କଣ ? ତମେ ଚୈତ୍ର କର ଜେଲ ଯାଇଥିଲ ତମ ଯାନ ଭଇ ପଟେ ବଚନ କ'ଣ । ଏକା ଲଉର ମଞ୍ଜୀ ପସ୍—ଛୁଡ଼ ହେ ସାହୁ, କ'ଣ ଆଉ ଥାନାକୁ ଯିବ —ଯାଅ, ଯାଅ, ପୁଣି ଦ୍ଵାଭଇ ଯାକ ଜେଲକୁ ଠଣା ହେଇ ଯିବେ ।

(ବଣ୍ଡୁ ଓ ବାବୁଆ ପ୍ରସ୍ଥାନ)

୨ୟ—ଆହେ ଜେଲକୁ ଗଲେ କ୍ଷତ କ'ଣ ? ଏଣିକ ତ ସେମାନଙ୍କ ପାଇଁ ଜେଲରେ ଭଲ ବନ୍ଦୋବସ୍ତ ହେଲଣି ! ନାଚ, ଗୀତ, ତାମସା ସବୁ ସେଠି ହଉଛୁ । ଯିବନ କାହିଁକ ?

୧ମ—ଥ୍ୱାଡ଼ ଛୁଡ଼ ମାଗୁଣୀସାହୁ--ଫି ଲଟା ସାଙ୍ଗରେ କ'ଣ ଗୋଟାଏ ଲଗିଚ—ଯାଅ (ଚ୍ଳକଗଲେ ଭଦ୍ରଲୋକ ଦୁଇଜଣ)

—ପରଦା—

## (୪ମ ଦୃଶ୍ୟ)

(କଳ୍ପତରୁ ବାବୁଙ୍କର ବିଚିତ୍ର ପ୍ରାସାଦ—ସାତଲକ୍ଷ ଟଙ୍କା ଲଟେରୀ ଜିଣି ବାସଭବନଟି ତାଙ୍କ ପ୍ରଥମ ବିଜୟ ନିଶାଣ—ଧନ ଦରିଦ୍ର କଳ୍ପତରୁ ହଠାତ୍ ଗୁଡ଼ାଏ ସମ୍ପତ୍ତିର ମାଲିକ ହୋଇ ଥିଲେବି, ତାଙ୍କର ବଡ଼ଲୋକ ଭିତରେ ତାଙ୍କର ଆତ୍ମ ବଡ଼ିମାର ସଚନା ମିଳେ

ବେଣୀ—ମନ ଫୁର୍ତ୍ତିରେ ଗୀତଟିଏ ଗାଉଛୁ ଲିଲି—କଳ୍ପତରୁଙ୍କର ଏକମାତ୍ର ଦୁଲାଳୀ—ଲିଲିର ପ୍ରତି ପଦକ୍ଷେପରେ ଫୁଟି ଉଠୁଛି) ଆତ୍ମ ବଡ଼ିମା—ଗୀତର ଶେଷ ଭାଗକୁ ଆସିଲେ ଶଙ୍କର୍ଷଣ—

## (ଗୀତ)

ବହନା ତୁ ସମୀର—
ଏ ଫୁଲ ପାରେ ନା ସହି—
ଫୁଲରସିଆ ତୁ ଗୁଣୁଗୁଣୁ ସୁରେ
ଗା'ନାରେ ଗୀତ—ମନ ତା'ର ଥରେ

ଖର୍ଚ୍ଚି ଦେ'ନାରେ କଅଁଳ ଏ ଦେହ—
ମଧୁ ଚଖା ଓଠ ଛୁଇଁ ।୧।

ପରଜାପତ୍ତି ତୁ ବସନା ତା'ପରେ
ରଙ୍ଗ ତା ମଳିନ କରନା ମିଛରେ

ତା ରଙ୍ଗ ଗୁହ୍ମିଲେ, କରିବାକୁ ଚେଷ୍ଟା
ଅକାରଣେ ପିନା ଯିବୁ ଶେଷେ ହାରି

ତା ରୂପ ଝଟକ ଫୁଟିବନି କେବେ
ଆଉ କା'ରୂପେ ମିଶାଇ ।୨।

ଏକା ଫୁଟିବାରେ ପାଏ ସଦା ସୁଖ
ଏକା ବାଧି ବାଁଧି ଭୁଲେ ସବୁ ଦୁଃଖ

ପାତିବ ତା ହାତ ଆଉ କାହା ପାଶେ
ନିଜ ସୁଖ ଦୁଃଖ ପାଇଁ ।୩।

ଶଙ୍କର—ଗୋଟିଏ ମିନିଟ ଆଜ୍ଞା । ଗୀତଟିର ରଚନାରେ କବିର ଦକ୍ଷତା ରହିଛି—ଭାଷାର ଶୈଳୀ ରହିଛି—ସ୍ୱର ସଂଯୋଜନାରେ ବାହାଦୁରୀ ରହିଛି—ଆପଣଙ୍କର କଣ୍ଠ ରହିଛି—ସ୍ୱଚ୍ଛନ୍ଦ ରହିଛି—ସବୁ ଥାଇ ଯିମିତି ଶ୍ରୋତାକୁ ବଡ଼ଟ ଅଭାବ ଅନୁଭବ କରିବାକୁ ପଡ଼ୁଛି—ମୋଟ ଉପରେ ଗାୟିକା (life) ଦେଇ ଗାଉ ନାହାଁନ୍ତି ।

ଲିଲି —(ରାଗି) ମୁଁ ଘରେ ବିନାନୁମତିରେ ଏ ଘର ଭିତରକୁ ଆସି ମୋ ଗୀତ ଶୁଣି ତା ଉପରେ ସମାଲୋଚନା କରିବାକୁ ଆପଣ କିଏ ? କୁହନ୍ତୁ ଆପଣ କିଏ ?

ଶଙ୍କର—ଗୋଟେ ମିନିଟ ଆଜ୍ଞା—ଅଜଣା ଅଶୁଣା ଏକ ଅଖ୍ୟାତ ପୁରି ପଲ୍ଲୀରେ ମୋର ଜନ୍ମ—ଆଉ ଯେଉଁ ସମାଲୋଚନା

କଥା କହୁଛନ୍ତି ନା—ଆପଣ ନିଜକୁ ଆଲୋଚନା-ସମାଲୋଚନା ଭିତରକୁ ଛାଡ଼ି ଦିଅନ୍ତୁ...ସେଇ ସମାଲୋଚକମାନେ ଆପଣଙ୍କୁ ସ୍ୱର୍ଗକୁ ଉଠେଇ ଦେବେ—ଗୋଟେ ମିନିଟ ଆଜ୍ଞା-ଆପଣଙ୍କର ଯେଉଁ ଈଶ୍ୱରଦତ୍ତ ଗଳା ରହିଛି, ଆପଣ ଯଦି ସାଧନା କରନ୍ତି, ମୁଁ ବେଟମାରି କହୁଛି ଆପଣ ଆମ ଦେଶର ଚଳଚ୍ଚିତ୍ର ଜଗତର ପ୍ରଚ୍ଛଦପଟ—

ଲିଲି —Shut up—ବାହାରି ଯାନ୍ତୁ—ନଚେତ୍ ମୁଁ ଆପଣଙ୍କୁ ସିଧା ପୋଲିସରେ ଦେବି ।

ଶଙ୍କର—ଖାଲି ଗୋଟେ ମିନିଟ-ମୋ ଭଳି ଗୋଟିଏ ଲୋକକୁ ଦମନ କରିବା ପାଇଁ ସାମରିକ ଶକ୍ତିର ପ୍ରୟୋଜନ କଣ ?

ଲିଲି —ବଡ଼ ଅଦ୍ଭୁତ ଲୋକ ଆପଣ—ଦୟାକରି କହିବେ କି ଆପଣ କାହାକୁ ଖୋଜୁଛନ୍ତି ?

ଶଙ୍କର—କୌଣସି ବ୍ୟକ୍ତିବାଚକ ବିଶେଷ୍ୟଙ୍କୁ ମୋର ଦରକାର ନାହିଁ—ଏ ଘରର ପ୍ରତ୍ୟେକଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ ଧରି ଆସିଛି—ଖାଲି ଗୋଟେ ମିନିଟ—ଏଇ ଦେଖନ୍ତୁ (ଲଟେରି ଟିକେଟକାଢ଼ି) ପ୍ରଥମ ପୁରସ୍କାର ଦୁଇଲକ୍ଷ—ଦ୍ୱିତୀୟ ପୁରସ୍କାର ଏକଲକ୍ଷ—ମାତ୍ର ଦଶଟଙ୍କା ଦେଇ ଅନ୍ଧକାରକୁ ଠେଲି ଛାଡ଼ନ୍ତୁ ଆଜ୍ଞା—ବାଜିଗଲେ ସ୍ୱର୍ଗକୁ ସିଡ଼ି ବାନ୍ଧିଦେଇ ପାରିବେ—ଖଣ୍ଡେ ନିଅନ୍ତୁ ଆଜ୍ଞା—

ଲିଲି —ତୁମେ ବର୍ତ୍ତମାନ ଏଠୁ ଯିବ କି ନାହିଁ କହିଲ ?

ଶଙ୍କର—ଆଉ ମୋ ଲଟେରି ଟିକେଟ ?

ଲିଲି —ବାବା ବୁଝିବେ ।

ଶଙ୍କର—ଦୀର୍ଘ କାଳ ଧରି ଦେଶ ସ୍ୱାଧୀନ ହେବା ପରେ ବି ଆପଣ-ମାନଙ୍କର ସ୍ୱାଧୀନତା ଟିକିକଏ ଯାଏ ବାପା, ମା'ଙ୍କ ପାଖରୁ

ହାସଲ କର ନାହାଁନ୍ତି ? ଇମିତ କଥା କଥାକେ ଯଦି ବାପା, ମା' ଙ୍କର ଅନୁମତି ନେଉଚ୍ଛବେ, ଯୁଗଶିକ୍ଷା ଆପଣଙ୍କୁ କଣ କହିବ ଆଜ୍ଞା ?

ନିଳ —(ରାଗି) ଘାଲୁ ! ଘାଲୁ ! (ଚାଲିଗଲେ)

ଶଙ୍କର—ଘାଲୁ ? ସେଇଟା ମଣିଷ ନା ଜାନୁଆର କହିଯାନ୍ତୁ ଆଜ୍ଞା —ଖାଲି ଗୋଟେ ମିନଟ—(ଶଙ୍କର ହତାଶ ହୋଇ ଆସି ବସିଲେ—(ଉପରୁ ଆସିଲା ଘାଲୁ ସେ ଘରର ଚାକର— ନାଁର ସାର୍ଥକତା ଅଛି ରୂପରେ । ଥରେ କଥା କହିବା ଆରମ୍ଭ କଲେ ବନ୍ଦହେବା ମୁସ୍କିଲ—ପଛରୁ ଆସି )

ଘାଲୁ —ଆଜ୍ଞା ଜୁହାର ।

ଶଙ୍କର—ତମେ କିଏ ବାବା ?

ଘାଲୁ —ଆଜ୍ଞା, ମୁଁ ଘାଲୁ—

ଶଙ୍କର—କଣ କହିଲ ? ଘାଲୁ ? ହେଲେ ଅଗ୍ନି ଅଗ୍ନି ବନସ୍ତ ଗୁଣ୍ଡ ଖାସ ଉଆସରେ ?

ଘାଲୁ —ମୁଁ ବାବୁଙ୍କ ଚାକର । ଆପଣଙ୍କୁ ଚା ଦବାକୁ ଆସିଲି ।

ଶଙ୍କର—ତେଣୁ ଶିରେ ଧର ପ୍ରଭୁ ଆଜ୍ଞା ଆସିଛି ଭଲ୍ଲୁକ ତଡ଼ିବାକୁ ମତେ । ହଉ ଠିକ୍‌ଏ ବସ ।

ଘାଲୁ —ନାଇଁ ଆଜ୍ଞା, ଦେଈ ରାଗିବେ ।

ଶଙ୍କର—ଦେଈ ?

ଘାଲୁ —ହଁ ଆମ ଦେଈ ମୋତେ ଭାରି ଭଲ ପାନ୍ତି ।

ଶଙ୍କର—କଣ କହିଲ ? ଦେଈ ତୁମକୁ ଭଲ ପାନ୍ତି ?

ଘାଲୁ —ହଁ ଆଜ୍ଞା ।

ଶଙ୍କର—ମୁଁ ବି ତମକୁ ଭଲ ପାଏ ।

ଘଲୁ —କ'ଣ କହିଲେ ଆଜ୍ଞା—ଆପଣ ମତେ ଭଲ ପାନ୍ତି ? ହୋ, ହୋ, ହୋ ବସନ୍ତୁ ଆଜ୍ଞା ବସନ୍ତୁ' ଶୁଣିଚନ୍ତି ନା ଆଜ୍ଞା, ସକାଳୁ ଆଗ ଉଠିପଡ଼ ବାବୁ ଆଉ ଦେଈଙ୍କ ପାଇଁ ପାଣି ଗରମ କରିବ···ବାବୁ ଯିମିତି ପଲଙ୍ଗରୁ ଉଠିବେ ଗୃ—ତା ପରେ ଦାନ୍ତଘଷା—ସେଇଠୁ ବିସ୍କୁଟ, ଅଣ୍ଡା ଦୁଧ, ବେଦନା, ଅଙ୍ଗୁର, କମଳା—ଗୃଲିଲ ଯେ—ଗୃଲିଲ ଯେ—

ଶଙ୍କର—ଗୋଟାଏ ମିନଟ ଘଲୁ—

ଘଲୁ —ଆଜ୍ଞା ଦେଈ ମତେ କହିଥିଲେ ତଡ଼ି ଦବାକୁ—

ଶଙ୍କର—ଘଲୁ ମୁଁ ତମକୁ ଭଲ ପାଏ!

ଘଲୁ —ମତେ ଭଲ ପାନ୍ତି ଆଜ୍ଞା ? ବସନ୍ତୁ ଆଜ୍ଞା ବସନ୍ତୁ ଶୁଣୁଚନ୍ତି ! ନା ଆଜ୍ଞା ! ସେଇଠୁ ମୋ କାମ ସରିଥିବ କ ନାହିଁ । ଦେଈ ବାହାରିବେ ବୁଲି—ମଟର ପୋଛୁ ହବ—ଗୃ ହବ—ଶୁଣୁଚନ୍ତି ନା ଆଜ୍ଞା ?

ଶଙ୍କର—ନ ଶୁଣି ମୋର ଚଉଦ ପୁରୁଷର ଗୃହ ଅଛି ? କ ଦୁର୍ଯୋଗରେ ମହିଷ ଘରୁ ଗୋଡ଼ କାଢ଼ିଥିଲି—ହେ ଭଗବାନ ଗଜର ଡ଼ାକ ଶୁଣିଥିଲ-ନରାହା ହରଣୀକୁ ସାହା ହୋଇଥିଲ —ଏ ଶଙ୍କର୍ଷଣକୁ ହଂସ ଘଲୁ ମୁହଁରୁ ଉଦ୍ଧାର କର ଆଜ- (ଉଠିବାକୁ ଉଦ୍ୟତ ହେଲେ)

ଘଲୁ —(ଭିଡ଼ିଧରି)—ଶୁଣୁଚନ୍ତି ନା ଆଜ୍ଞା—ତା ପରେ ଯିମିତି ଜଳଖିଆ, ଗୃ ଖିଆ ସରିବ—ମଟର ଚଢ଼ି ବାବୁ ଆଉ ଦେଈ ବାହାରିବେ ବୁଲି—ମୁଁ ଆଉ ଆମ ଆଲ୍‌ସାନ୍ କୁକୁର ଯାଇ ଛିଡ଼ା ହେଇଯିବୁ ମଟର ପାଖରେ—ବାବୁ କହିବେ— ଗେଟିନ୍···ଗେଟିନ୍···ଶୁଣୁଚନ୍ତି ନା ଆଜ୍ଞା ! ତା ପରେ

ମଝିରରେ ଯାଇ ବସିଯିବୁ—ସୁଲୁସୁଲିଆ ପବନ ବାଜି ମୋ ଆଖି ଲଗି ଆସୁଥିବ-ବାବୁ ମୋ ମୁଣ୍ଡରେ ଡ଼ୋ କନା ପାଦାର ଚଡ଼େଇ ଦେବେ—

ଶଙ୍କର—ଖାଲି ଗୋଟେ ମିନିଟ ଘଲୁ—

ଘଲୁ —ଆଜ୍ଞା ଦେଇ ମତେ କହିଥିଲେ ତଡ଼ିଦେବାକୁ—
(ଶଙ୍କର୍ଷଣ ଦଉଡ଼ି ଗୃଲିଗଲେ )
(ପିଡରୁ ଓହ୍ଲେଇ ଆସିଲେ କଳ୍ପତରୁ ବାବୁ-ପଛେପଛେ ପଶୁପତି)

କଳ୍ପତରୁ—ଲେକଟାର ଘରେ ଖାଇବାକୁ ଦାନା ନାହିଁ—ଅଥଚ ଏତେ ଦାମ୍ଭିକତା ? ନିଜେ ଡ଼ାକ ପଠେଇଲି, ଖାତିର କଲାନି ?

ପଶୁ —ନିଜର ବର୍ତ୍ତମାନ ଅବସ୍ଥା ପ୍ରତି ଖିଆଲ ତାର ନଷ୍ଟପ୍ରୁ ନାହିଁ । ଆପଣ ବ୍ୟସ୍ତ ହେବେ ନା—ମୁଁ କହି ରଖୁଛି, ଆପଣ ଦେଖିବେ ବିଶୁ ଯଦି ଆସି ଆପଣଙ୍କ ଗୋଡ଼ତଳେ ଶରଣ ନ ପଶିଚ, ତା ହେଲେ ମତେ କହିବେ ।

କଳ୍ପତରୁ—ମୋର କେବଳ ଗୋଟାଏ ଭୟ 'ପଶୁପତି ବାବୁ—ବିଶୁ ସହିତ ଲିଲିର ଦିନେ ନିବନ୍ଧ ହୋଇଥିଲି, ଆମେରିକାରୁ ଫେରିଲା ପରେ ସ୍ୱପ୍ନକୁମାରଙ୍କ କାନରେ ଯିମିତି ନ ପଡ଼େ-

ପଶୁ —ଆମକୁ ଇମିତି ପରିସ୍ଥିତି ସୃଷ୍ଟି କରିବାକୁ ପଡ଼ିବ—ଯୋଉଥିରେ କି ସ୍ୱପ୍ନ କୁମାରଙ୍କ ଫେରିବା ପୂର୍ବରୁ ବିଶୁ ଏଠି ନଥିବ ଏବଂ ସେଇଟା ମୋର କାମ—

କଳ୍ପତରୁ—ସତରେ ପଶୁପତି ବାବୁ ! ସ୍ୱପ୍ନକୁମାର ଆଉ ଲିଲିର ବିବାହ ସରିଲେ ମୁଁ ଗୋଟାଏ ମହା ଚିନ୍ତାରୁ ରକ୍ଷା ପାଇଯିବି

ପଶୁ —ଲିଲି ଦେବୀଙ୍କ ଭଳି ଶିକ୍ଷିତା, ଆଧୁନିକା ସ୍ତ୍ରୀ ସାଙ୍ଗକୁ ନଜର ଭବିଷ୍ୟତ ପାଇଁ ଶକ୍ତ ମୂଳଦୁଆ ··ସ୍ୱପ୍ନକୁମାରଙ୍କ ଭଳି ଚତୁର ଲୋକ ଛାଡ଼ି ଦେବ କାହିଁକି ?

କଳ୍ପତରୁ—କିନ୍ତୁ ସ୍ୱପ୍ନକୁମାର ସେ ଫେରିବା ମାତ୍ରେ ବିବାହ କରିବାକୁ ରାଜି ନୁହେଁ—

ପଶୁ —ସେ ଯିଏ ହେଲେ ବି କେବେ ରାଜି ହବନି—ନଜର ଗୋଟାଏ କିଛି ବ୍ୟବସ୍ଥା ନ କରି ହଠାତ୍ ବିବାହ କରିବେ କିମିତି ? ତା ଛଡ଼ା ଆର୍ଥିକ ଦୃଷ୍ଟିରୁ ଆମେ ସିନା ପ୍ରସ୍ତୁତ—ତାଙ୍କର ବାପା, ମା ନାହାନ୍ତି···ବିଚରା ଏକା ଲୋକ, ତେଣୁ ପସ୍ତୁଉଚନ୍ତି—ତାଙ୍କର ଅଭାବ ଅସୁବିଧା ଗୁଡ଼ିକ ଯଦି ଆମ ତରଫରୁ ସମାଧାନ ହେଇ ଯାଏ, ମୋର ମନେ ହୁଏ, ସେ ନିଶ୍ଚୟ ରାଜି ହେବେ !

କଳ୍ପତରୁ—ବାସ୍ତବିକ ପଶୁପତି ବାବୁ ! ସ୍ୱପ୍ନକୁମାର ଭଳି ଜାମାତା ପାଇବା ମୂଳରେ ରହିଚି ତୁମର ଅକ୍ଳାନ୍ତ ଚେଷ୍ଟା ।

ପଶୁ —ସେ କିଛି ନୁହେଁ ଆଜ୍ଞା ! ଆପଣଙ୍କର ଦାନା ଖାଇଚି—ତା ତୁଳନାରେ ମୁଁ ବା ଅଧିକା କଣ କରିଚି ? ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁନି—ଆପଣ ଏତିକି ଜାଣି ରଖନ୍ତୁ, ଆଜି କାଲି ବଜାରରେ ନଗଦ ପନ୍ଦର ହଜାର ଟଙ୍କା କିଛି ଛୁଆଖେଳ ନୁହେଁ—ତା ଛଡ଼ା ଆମେରିକାରୁ ଫେରିଲେ ଡାକ୍ତରଖାନା ଏବଂ ସବୁଠୁ ବଡ଼ କଥା ହଉଚି ଐଶ୍ୱର୍ଯ୍ୟଶାଳୀ ପିତାର ଏକମାତ୍ର କନ୍ୟାକୁ ବିବାହ କରି ଅଗାଧ ଐଶ୍ୱର୍ଯ୍ୟର ମୋହ ସ୍ୱପ୍ନକୁମାର ଛାଡ଼ିବେ କାହିଁକି ?

କଳ୍ପତରୁ—ମୁଁ ଭାବୁଚି ତୁମର ସେଇ ଗୋଟାଏ କଥା—ସ୍ୱପ୍ନକୁମାର

ଫେରିବା ପୂର୍ବରୁ ବଣ୍ଟୁର ପରିବାରଟି ଏଠୁ କମିତି ସିଦ୍ଧା କରାଯାଇ ପାରନ୍ତ ।

ପଶୁ—ମୁଁ ନିଜେ ଥରେ ଯାଇ ବଣ୍ଟୁକୁ ସାକ୍ଷାତ କରିବି ।

କଳ୍ପତରୁ—ମୁଁ ବି ଠିକ୍ ସେଇଆ ଭାବୁଛି ପଶୁପତି ବାବୁ । ବରଂ କିଛିଟଙ୍କା ଦେଇ ସେମାନଙ୍କୁ ଏଠୁ (shift) କରାଇବାର ବନ୍ଦୋବସ୍ତ କର ।

ପଶୁ—ମୁଁ ଭାବୁଚି ଟଙ୍କା ହଜାରେ ଧରି ମୁଁ ନିଜେ ତା ଘରକୁ ଯାଇଁ ଅବସ୍ଥା ଦେଖି ବ୍ୟବସ୍ଥା କରି ଆସିବି—ଆପଣ କଣ କହୁଚନ୍ତି ?

କଳ୍ପତରୁ—ହଁ, ତୁମ ଉପରେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଅଛି ପଶୁପତି ବାବୁ—ତୁମେ ଯାହା ଠିକ୍ ଭାବୁଛ କର—ହଁ, ପଶୁପତି ବାବୁ ! ଏଇ ମାସଠୁ ତୁମେ ଦରମା ନେବ ଦୁଇଶ ତା, ଛଡ଼ା ଲିଲିର ବିବାହଟା ହେଇଗଲେ, ମୁଁ ତୁମ ନେଇ ଅନେକ କିଛି କଳ୍ପନା କରିଚି ।

ପଶୁ—କେବଳ ଆପଣଙ୍କ ଭକ୍ତ ମୁନିବ ପାଇ ମୁଁ ବି ବହୁ ସୁଯୋଗକୁ ଉପେକ୍ଷା କରି ଦେଇଚି ।

କଳ୍ପତରୁ—ଆମର କଥାରେ ରହିଚି ପଶୁପତି ବାବୁ—ବଡ଼ଲୋକ ହବ କିମ୍ବା ବଡ଼ ଲୋକ ପାଖରେ ଥିବ—ବଡ଼ଲୋକସିନା ହୋଇ ପାରିନ—ତେହଲେ କଳ୍ପତରୁ ମହାନ୍ତି ପାଖରେ ରହିଚ ଯେତେବେଳେ···ହାଃ···ହାଃ ··ହାଃ—(ଗର୍ବରେ ହସି ଉଠିଲେ )

—ପରଦା—

## ଷଷ୍ଠ ଦୃଶ୍ୟ

( ସହରର ଗୋଟିଏ ରାସ୍ତା—ଶଙ୍କରଙ୍କୁ ରୋକି ଧରିଥାଏ ଦାଗୀ )

ଶଙ୍କର—ହେଲା, ହେଲା, କି ବିପଦରେ ପଡ଼ିଲି । ମଣିଷ—ଖାଲି ଗୋଟାଏ ମିନଟ ପାଇଁ ଶୁଣ ।

ଦାଗୀ—କୁଆଡ଼େ ଯାଉଚ ?

ଶଙ୍କର—ଅନ୍ନ ସଂସ୍ଥା କରିବା ପାଇଁ ବାହାରିଚି—ଗୋଟାଏ ସରକାରୀ ସନ୍ଧାନରେ ଯାଉଚି ।

ଦାଗୀ—ହେଃ, ଛିଃ, ଯାଅନ । ଭେଟି—ପ୍ରୀତ୍ୟୁପ୍ରୀତ ତୋଷଣ—ବିଲ୍‌କୁଲ ଯାଅନ

ଶଙ୍କର—ବାଃ, ଛିଃ ସୁନ୍ଦର ନିଷ୍ପତ୍ତି । ମାନିଲି, ସରକାରୀ ଚାକିରୀ କରିବିନି—ଯାଉଚି ଓଁକାରମଲ୍ଲଙ୍କୁ ଧରାଧରି କରି ତା ଦେ କାନରେ ରହିଯିବି ।

ଦାଗୀ—ଯିଏ ଗୋଟାଏ ହାତରେ ସତ୍ୟ, ଅହିଂସାର ଅବତାର ରାମଚନ୍ଦ୍ରଙ୍କୁ ଧରି ଅନ୍ୟ ହାତରେ ଶୋରିଷ ତେଲରେ ବାଦାମ ତେଲ ମିଶାଏ—କଳା ବଜାର ପଇସା ମାରି ଯିଏ ଗଣେଶଙ୍କୁ ଚନ୍ଦ ଟିକିଏ ଦେଇ ପଟି ଚଢ଼ାଏ—ହାଃ—ହାଃ—ହାଃ—

ଶଙ୍କର—ହେଲା, ହେଲା, ବୁଝିଗଲି । କି ଦୁର୍ଯ୍ୟୋଗରେ ମଣିଷ ଘରୁ ଗୋଡ଼ କାଢ଼ିଲି—ଗୋଟାଏ ମିନଟ ଶୁଣ—କୁଆଡ଼େ ଯିବିନି, ମଠରେ ବସି ସଂକୀର୍ତ୍ତନ କରିବି ।

ଦାଗୀ—ହାଃ, ହାଃ, ପଙ୍କ ! ଅଥର୍ବ, କର୍ମକୋଡ଼ି ।

ଶଙ୍କର—ଗୋଟେ ମିନଟ । ତୁମେ ନିଜେ କହିଦିଅ ବାବା କୁଆଡ଼େ ଯିବି ?

ଯୋଗୀ —ଯାଇପାରିବ ? ଏଇଠୁ ସିଧା ବାହାର ଯାଅ—
ଚୋର, ଖୁନ୍, ଡକାୟତ—ଏକା ରାତରେ ଭେକ ବଦଳି ସିଦ୍ଧ
ଠିକଣା ଦେଉଛ, ଅଷ୍ଟାଭକ୍ତ ବାହାର ପଡ଼ । ଆଗରେ ସିଏ
ପଡ଼ିବ ଏଇଥିରେ—(ଛୁରୀ କାଢ଼ି ଗଲା କାଟିବାର ଭଳିକି
ଶବ୍ଦ କଲେ )

ଶଙ୍କର—(ଭୟରେ) ଦୟାକରି ଖାଲି ଗୋଟେ ମିନିଟ୍—ତୁମକୁ
ହାତ ଯୋଡ଼ୁଛି—ଦୟାକରି ମୋତେ ମୁକ୍ତ ଦିଅ । ତୁମର ଏ
ଆଦେଶ ବଜ୍ର କଠୋର—ମାନି ପାରିବିନି ବାବା !
ଚୋର ଖୁନ୍ ଡକାୟତ — କ୍ଷମାକର, ମୁଁ ଜଣେ ଦୁଃସ୍ଥ
କଳାକାର—ନିରୀହ ନାଗରିକ ।

ଯୋଗୀ —ହାଃ, ହାଃ··ତୁମେ ଜଣେ ସୁସ୍ଥ, ସବଳ ଭଣ୍ଡ !

ଶଙ୍କର—ନା, ନା, ତୁମେ ଭୁଲ୍ ଖବର ପାଇଛ—ପାଖରେ ମୋର
ପୋଲିସ୍ ଭେରିଫିକେସନ ରିପୋର୍ଟ ଅଛି ।

ଯୋଗୀ —(ଘୃଣାରେ) ଯଃ—ଗୁଳ୍—ହେଟ୍—( ଚାଲିଗଲା )

ଶଙ୍କର—ଭଗବାନ ଉଦ୍ଧାର କଲ ।ରିକ୍ସା କହିଲ—ଓହୋ, ବଞ୍ଚିଗଲି
ମଣିଷ—

(ବିପରୀତ ଦିଗରୁ ଆସିଲ ଭୋଲୁ)

ଭୋଲୁ —ଆଜ୍ଞା ! ଜୁହାର ।

ଶଙ୍କର—ଗୋଟେ ମିନିଟ—ତୁମେ ପୁଣି କିଏ ବାବା ?

ଭୋଲୁ —ମତେ ଚିହ୍ନି ପାରୁନାହାନ୍ତି ଆଜ୍ଞା ? ସେ ଦିନ ପରା ମୋ
ସାଙ୍ଗରେ କେତେ ମିଠା କଥା ହୋଇଥିଲେ ।

ଶଙ୍କର—ତୁମ ସାଙ୍ଗରେ ମିଠାକଥା ହୋଇଛି ? କି ସର୍ବନାଶ—
ଧିରେ—ଧିରେ କୁହ ବାବା ଲୋକ ବାକ ଶୁଣିବେ—କାହିଁ

ଅତୀତର ସେ ହଜିଲା ସ୍ମୃତି ମନ କୋଣରେ ଉଙ୍କି ମାରୁନି ?
ସଂଶୟ ମୋଚନ କର—ପରିଚୟ ଦିଅ ବାରେ ତବ ?

ଘଲୁ—ସେ ଦିନ ଆମ ବାବୁଙ୍କ ଘରକୁ ଯାଇ ନ ଥିଲେ ? ଆପଣଙ୍କୁ ଛଡ଼ିବା ପାଇଁ ଆସି କେତେ କଥା ହେଲି—ମୁଁ ଶରଧାରେ କେତେ କଥା କହୁଥାଏ—ଆପଣ ଖସି ଆସିଲେ—ଆଜି ମୁଁ ଆପଣଙ୍କୁ ଗୁଡ଼ବନ୍ଦନ—କ'ଣ ଚିହ୍ନି ପାରିଲେ ଆଜ୍ଞା ? ମୁଁ ସେଇ ଘଲୁ ।

ଶଙ୍କର—ଚିହ୍ନିଲି' ଚିହ୍ନିଲି ଘଲୁ । ଲଭ ଭିତରେ ଏତିକି ହେଲା ବାଘ ମୁହଁରୁ ଖସି ଘଲୁ ହାବୁଡ଼େ ପଡ଼ିଲି—କି ଯୋଗରେ ଆଜି ରାତି ପାହିଥିଲି । ଖାଲି ମହାପୁରୁଷ ଗୁଡ଼ାଙ୍କର ଦର୍ଶନ ମିଳୁଛି—ଗୋଟେ ମିନିଟ୍ ଘଲୁ—ମୋର ସାଂଘାତିକ କାମଅଛି–

ଘଲୁ—ମୋ ମୁଣ୍ଡ ଖାଆନ୍ତୁ ଆଜ୍ଞା । ଟିକିଏ ଶୁଣନ୍ତୁ ନା—ମୁଁ କେତେ କାମ କଲି, ହେଇଟି ଗଲି ବଜାରକୁ—ବଣିଆ ଦୋକାନରେ ମୋର କାନର ଲବଙ୍ଗ ସଫା କଲି—ଦେଖିଲେ ଆଜ୍ଞା କି ବଢ଼ିଆ ଦିଶୁଛି (କାନରେ ପିନ୍ଧିଥିବା ଲବଙ୍ଗ ଦେଖାଇଲା) ବଜାରରେ କାହିଁକି କେଜାଣି ଆପଣଙ୍କ କଥା ମନେ ପଡ଼ି ମନଟା ଖାଲି ଗୋଳେଇ ଘାଣ୍ଟି ହେଲା—ସେଇଠୁ ଆପଙ୍କଙ୍କୁ ଖୋଜୁଥିଲି ।

ଶଙ୍କର—ଗୋଟେ ମିନିଟ୍ ଘଲୁ—ମୋତେ ଆଉ ଏ ମିଛ ମାୟା ବନ୍ଧନରେ ବାନ୍ଧନା—ମୁଁ ଟିକିଏ ଆସେ ।

ଘଲୁ—କୁଆଡ଼େ ଯିବେ ଆଜ୍ଞା ?

ଶଙ୍କର—(ରାଗି)—ମର୍ତ୍ତ୍ୟରେ ଘର ଝମେଲା—ଯାଉଛି ସିଢ଼ି ବାନ୍ଧି ସ୍ୱର୍ଗକୁ ଚାଲିଯିବ ।

ଭଲୁ—ରାଗି ଚଲି କି ଆଜ୍ଞା ? ମୋ ମୁଣ୍ଡ ଖାଆନ୍ତୁ—କୁହନ୍ତୁ ନା, କୁଆଡ଼େ ଯିବେ ?

ଶଙ୍କର—ମରିବାକୁ ଯାଉଛି ଭଲୁ—ଜୀବନ ପ୍ରତି ବିତୃଷ୍ଣା ଆସିଗଲାଣି ।

ଭଲୁ—ଦିନ ରାତି ଖଟି ଖଟି ମୁଁ ବି ଦଗ୍‌ଦାର୍ ହୋଇ ଗଲିଣି ଆଜ୍ଞା—ମୁଁ ବି ଜୀବନ ହାରି ଦେବି—ଚାଲନ୍ତୁ ଦୁହେଁ ଏକା ସାଙ୍ଗରେ ଜୀବନ ହାରି ଦେବା ।

ଶଙ୍କର—ଗୋଟେ ମିନିଟ୍ ଭଲୁ—ମିଛିଂ କରି ସବୁ କାମ କରିହୁଏ କିନ୍ତୁ ମରି ହୁଏନା—ତେଣୁ ତୁମେ ଏପଟରେ ଯାଇ ମର, ମୁଁ ଯାଉଛି ସେ ପଟରେ ମରିବି—(ଭଲୁକୁ ଠେଲି ଦେଇ ନିଜେ ଅନ୍ୟ ଦିଗରେ ଚାଲିଗଲେ—ପରେ ପରେ ଆସିଲେ ଶେଠ ଓ ବିଶୁ)

ଶେଠ—ନେହିଁ, ନେହିଁ ବିଶୁ-ତୁମର ନୌକରି ମେରା ଜରୁରତ ନେହିଁ—ଭାଇ ଆପନା ରାସ୍ତା ଦେଖୋ ।

ବିଶୁ—ଆପଣ ମୋର ଅନ୍ନଦାତା—ଘରେ ମା ମୋର ଶକ୍ତ ବେମାର—ଏପରି ଅବସ୍ଥାରେ ମୋତେ ଚାକିରିରୁ ବାହାରକରି ଦିଅନ୍ତୁନା—ମୋର ଏମିତି କି ଦୋଷ ଦେଖିଲେ ଯେ···

ଶେଠ୍—ତୁମ ଚୋର ହେ ଡାକୁ, ଦାଗୀ, ଆସାମୀ—କ୍ୟା ମୈନେ ଝୁଟ୍ ବୋଲା ?

ବିଶୁ—ଆପଣ ଖାଲି ପର କଥା ଶୁଣିଛନ୍ତି ଶେଠ୍‌ଜୀ······

ଶେଠ୍—ହାଁ, ପର କଥା ଶୁଣିଚନ୍ତି । ତୁମ୍ ପହିଲେ ସରକାରୀ ନୌକରୀ କରୁଥିଲ ନା ? କତ୍‌ନା ରୁପିୟା ଚୋରି କରକେ ଜେଲ୍ ଗିଆଥା ? ହାଁ, ହାଁ ବୋଲତା କେହିଁ ନେହିଁ ? ହାଟ
ମ

ସବ୍ ମାଲୁମ ଅଛି । ଖାଲି ପଶୁପତି ବାବୁକା ଖାତିର୍‌ସେ ହାମ୍ ତୁମକୁର ଖିଥିଲା—

ବଶୁ—ଆପଣ ଯାହା ଶୁଣିଛନ୍ତି ଶେଠ୍‌ଜୀ ସବୁ ସତ ଯେ, ହେଲେ ବିଶ୍ୱାସ କରନ୍ତୁ ମୁଁ ଚୋର ନୁହେଁ ।

ଶେଠ—ତବ୍ ସରକାର ତୁମକୋ ଫିର୍ ରଖିଲାନ କାହେକୋ ? ନୌକରୀକେ ଲିୟେ କିତନା ଧନ ତୁମ୍ ଘୁମିଲା, କୋଇ ଭି ବିଶ୍ୱାସ୍ କର୍‌କେ ତୁମ୍‌କୋ ରଖିଲାନ କଉଁ ?

ବଶୁ—ଶେଠ୍‌ଜୀ ! ଆପଣଙ୍କୁ ହାତ ଯୋଡ଼ୁଛି ଚାକିରୀରୁ ମୋତେ ବାହାର କରି ଦିଅନ୍ତୁନି—ଏକା ମୁଁ ନୁହେଁ । ମୋର ମା, ଭାଇ, ଭଉଣୀ ସମସ୍ତେ ମୋର ମୁହଁକୁ ଅନେଇ ବସିଛନ୍ତି—ଚାକିରୀ ଖଣ୍ଡେ ପାଇଁ ବହୁ ଲୋକଙ୍କ ଗୋଡ଼ ତଳକୁ ଧାଇଁ ବି ଯୋଗାଡ଼ କରି ପାରି ନଥିଲି—ଆପଣ ଯଦି ଦେଇଚନ୍ତି କାଢି ନଅନ୍ତୁନି ଶେଠ୍‌ଜୀ ।

ଶେଠ—ନେହିଁ, ନେହିଁ, ବଶୁ ! ହାମେ ପରେସାନ ମତ କରୋ । ଚୋର—ଡାକୁ—ଦାଗୀ ଆସାମୀକେ ଲିୟେ ହାମନେ ଗୁଦାମ ଖୁଲି ନେହି ।

ବଶୁ—ଶେଠଜୀ ! ଆପଣ ମୋତେ ପରୀକ୍ଷା ଦିଅନ୍ତୁ ଚାକିରୀ, ତରିଶ, ଯାହା ଆପଣଙ୍କର ଖୁସି ଦିଅନ୍ତୁ—ପରେ ମୋ ଉପରେ ବିଶ୍ୱାସ ହେଲେ ବଢ଼େଇବେ-ଦୟା କରନ୍ତୁ ଶେଠଜୀ.

ଶେଠ—ଦେଖୋ ବଶୁ ! ତୁମ ଅଗର ମୁଫତମେ ନୌକରୀ କରନେ ରାଜି ହବ, ତବଭି ହାମ ତୁମକୋ ହାମ୍‌ର ଦୁକାନମେ ନେହିଁ ରଖେଙ୍ଗେ ଯେ ହାମର୍ ଆଖିର୍ ବାତ୍ ଆଛି, ହାଁ—

ବଶୁ— ତାହେଲେ ମୋର କୋଉଏ ଧନର ଦରମାହା ଶେଠଜୀ ?

ଶେଠ୍—ପହ୍ଲେ ହାମର ଗୁଦାମ କା ମାଲ ଦେକ୍ ହୋନେ
    ଦୋ—ବାଦ୍ ମେ·····

ବଶୁ—ଆପଣ କଣ ମୋତେ ସନ୍ଦେହ କରୁଛନ୍ତି ଶେଠୀଜୀ ?

ଶେଠ୍—କଉଁ ନେହିଁ ? ଭୁଷ ନେହିଁ ମାନ୍‌ନା - ବଶୁ
    ଗୈର୍ ତୁମ୍ଭାକୁସେ ହାମ୍ କଭି ବିଶ୍ୱାସ ନେହିଁ କର୍‌ତେ ଦେଖା,
    ଯୋକୁଛଭି ମାଲ୍ ହାମ୍‌ରା ଗୁଦାମ ସେ କମ୍‌ତି
    ହାମ୍ ତୁମ୍ଭକୁ ଫୋକାସ୍‌ଜେ ଜରୁର ଖୋଜନ୍ ଦବ । ହୋଗ୍ଗା,

ବଶୁ—ଶେଠ୍ ଜୀ ! ମୋ ମା ବେମାର—ପଇସା ଅଭାବରୁ ଟିକଏ
    ଔଷଧ ଦେଇ ପାରୁନି—ଆପଣ ପାଞ୍ଚ, ଦଶଟଙ୍କା ଯାହା
    ହେଲେ ଦେଇଥାନ୍ତୁ । ପରେ ମୋ ଦରମାରୁ କାଟିନେବେ,
    ହେଲେ ବର୍ତ୍ତମାନ ପାଇଁ ମୋତେ ନିରାଶ କରନ୍ତୁନି !

ଶେଠ୍—(ଭାବି)—ଆଚ୍ଛା ହାମେ ତୁମର ମା କେଲିୟେ ପାଞ୍ଚ, ଦଶ
    ସାହାଯ୍ୟ ଦେଗା—ଲେକିନ୍ ଅଭି ନାଇଁ-ଶାମକୋ—ତୁମ୍
    ଆଜାନା -ହାମ୍ ଧର୍ମଶାଳା ମେ ରହିବ (ହସି) - ଅରେ
    ନେହି ତୋ ତୁମାର ବହେଣ ମୀର ଶାକୋ ଭେଜ୍ ଦେନା—
    ତୁମାର କାମ୍ ହୋଗା ତୋ—
    ବଶୁ—ଶେଠ୍ ଜୀ·····

ଶେଠ୍—ଆରେ, ଆରେ ? ତୁମ୍ ଗୁସା ହେ ଗିଆ—ଆରେ
    ହାମେତୋ ଥଟ୍ଟାରେ କହିଲି ଆଚ୍ଛା, ଯାଓ, ଯାଓ—କୋନ୍
    ତୁମର ବହେଣକୋ କୁଛ୍ ବୋଲ୍‌ତା ହେ—(ଗୁଲିଗଲେ)
    (ବଶୁ ପଥରପରି ଠିଆ ହୋଇଥିଲା-ପଛରୁ ଆସିଛି ଦାଗୀ)

ଦାଗୀ—ହାଃ,, ହାଃ, ହାଃ··କଣ ରାଜ ? ଶେଠ୍ ପ୍ରସ୍ତାବରେ ରାଜି ?
    ଯୌବନର ଭେଟି—

ଋଷ୍ଟ—ବନ୍ଦକର, ବନ୍ଦକର, ତୁମେ—ଚାହୁଁଛ ମୋ ପଛରେ ଗ୍ରୁଇ
ଭଳ ଲାଗି ରହିଛ ? କାହିଁକି ମତେ ବିରକ୍ତ କରୁଛ ?
ଯାଅତୁମେ, ଚାଲିଯାଅ ।

ଦାଗୀ—ତାଳଗଛର ଗ୍ରୁଇ ଗ୍ରୁଙ୍କଣ—ମା ବେମାର—ଟଙ୍କା
ଦରକାର ? ଟଙ୍କା—ଗ୍ରୁହିଁ—ଗ୍ରୁଙ୍କଣ ଗଲା—ଟଙ୍କା ଆଣିବୁ
କୋଉଠୁ !

ଋଷ୍ଟ—କୁଲିଗିରି କରିବ······ରିକ୍ସା ଟାଣିବ ପଛେ, ହେଲେ
ପାପ ଅର୍ଜିତ ଟଙ୍କାରେ ବଞ୍ଚି ପାରିବନ ।

ଦାଗୀ—ହୋଃ—ଏ—ଏ । (ଦଶଟଙ୍କିଆ ନୋଟ କେତେ ଖଣ୍ଡ
ବାହାର କରି ନବୁ) ? ନେ ଧର ·····

ଋଷ୍ଟ—ଟଙ୍କା ?

ଦାଗୀ—ତୋର ଦରକାର ତୁ ପାଉନୁ—ମୋର ଦରକାର ନାହିଁ
ମୋ ପାଖରେ ଅଛି··କେତେ ଦରକାର ? ପଚାଶ ? ଶହେ?
ଦୁଇଶ ? ପାଞ୍ଚଶ ? ହଜାରେ ?

ଋଷ୍ଟ—ନା, ନା ଟଙ୍କା ମୋର ଦରକାର ନାହିଁ ।

ଦାଗୀ—ଆରେ ଫେରାଇବା ଦରକାର ନାହିଁ । ନେ···

ଋଷ୍ଟ—ଦରକାର ନାହିଁ ମୋର ସେ ଟଙ୍କା।

ଦାଗୀ—ଅଲବତ ଦରକାର ଆଜ ନ ହେଲେ କାଲି ନବୁ
ନ ହେଲେ ମାସ ପରେ ନେବୁ ବର୍ଷ ପରେ ନେବୁ ।
ନବୁ, ନବୁ, ନବୁ, ।

ଋଷ୍ଟ—ନା, ନା—ରିକ୍ସା ଟାଣିବ, କୁଲିଗିରି କରିବ ପଛେ,
ତୁମର ଏଟଙ୍କା ଛୁଇଁବନ ।

ଢାଗୀ—କିନ୍ତୁ ଖବରଦାର—ଟଙ୍କା ପାଇଁ ଭଉଣୀ କୋଉଠି ହାତ ପାତିବା ପୂର୍ବରୁ ତାକୁ ଖୁନ୍ କରି ଦବୁ—ଶେଷ କରିଦବୁ—ଶାନ୍ତିରେ ମରିବ—ଯାଃ—ଯାକ—ମୋ ଆଗରୁ (ଫେରି) ଯୋକଲ୍ ପେଟ—ଆଦଣ । ହାଃ—ହାଃ—ହାଃ—(ଚାଲିଗଲେ)

ପରଦା

—※—

## ୭ମ ଦୃଶ୍ୟ

(ପଶୁପତି ବାବୁଙ୍କ ଅଳନ୍ଦ—ବାହାରୁ "ଭାଇ" "ଭାଇ" ଡାକ ଆସୁଛି ମୀନା—ମୁହଁରେ ତାର ବିଶାଦର ଛାୟା—ଭଙ୍ଗା ଗଳା)

ମୀନା—ଭାଇ ! ଭାଇ ! ଭାଇ !

ପଶୁ—( ଡାକ ଶୁଣି ଭିତରୁ ) କିଏ ? ( ମୀନାକୁ ଦେଖି ) ଆରେ ମୀନା ! କି ଆଶ୍ଚର୍ଯ୍ୟ ! ମୀନା ତୁମେ ବାହାରେ ଠିଆ ହୋଇ ଭାଇ ଭାଇ ବୋଲି ଡାକ ଛାଡୁଛ ? କାହିଁକି ସିଧା ଭିତରକୁ ଚାଲିଗଲନି—ତୁମ ପାଇଁ ତ ଏଠି କିଛି ବାଧାନାହିଁ ଏତ ତୁମର ନିଜ ଘରଭଳି ।

ମୀନା—(ନିଜକୁ ଟିକିଏ ଦୂରେଇ ନେଇ)— ନା, ନା—ମୁଁ ଆସିଥିଲି ····ଭାଇ ଔଷଧ ପାଇଁ ଯାଇ ଦୁଇଦିନ ହେଲା ଘରକୁ ଫେରି ନାହାଁନ୍ତି—ବୋଉକୁ ଜ୍ୱର—ସେ ବିଛଣାରୁ ଉଠି ପାରୁନି —କାଳେ ଏଠିକି ଆସିଥିବେ ଭାବି ମୁଁ ଚାଲି ଆସିଲି ।

ପଶୁ—ଆରେ ସେଥିରେ କ'ଣ ଅଛି ! ତୁମ ଭାଇ ନ ଥିଲେ, ମୁଁ ତ ଅଛି ଔଷଧର ବନ୍ଦୋବସ୍ତ କଣ ହବନି ତୁମେ ଆଗେ ଭିତରକୁ ଚାଲିଲ

ମୀନା—ନା, ନା—ପଶୁପତି ବାବୁ ! ମୋତେ ସାଙ୍ଗେ ସାଙ୍ଗେ ଫେରି ଯିବାକୁ ପଡ଼ିବ—ବୋଉକୁ ଏକା ଘରେ ଛାଡ଼ି ଆସିଛି ହଁ, ପଶୁପତି ବାବୁ ଆପଣ ଯଦି କିଛି ଟଙ୍କା ସାହାଯ୍ୟ କରନ୍ତେ ବହୁତ ଉପକାରରେ ଲାଗନ୍ତା ।

ପଶୁ—ଆରେ ସାହାଯ୍ୟ କଣ ? ସେଇଟା ତ ତମର ଦାବୀ—ମୋର କର୍ତ୍ତବ୍ୟ—କିନ୍ତୁ ତୁମେତ ସେଦିନ ଏଇ ଟଙ୍କା ପାଇଁ···

ମୀନା—ମତେ କ୍ଷମା କରନ୍ତୁ ପଶୁପତି ବାବୁ—ଦିନେ ଆପଣ ମତେ ଟଙ୍କା ଯାଚିଥିଲେ, ମୁଁ ଆପଣଙ୍କୁ ଅପମାନ ଦେଇଥିଲି—ଆଜି କିନ୍ତୁ ଅବସ୍ଥାରେ ପଡ଼ି ମୁଁ ଆପଣଙ୍କ ଦ୍ୱାରସ୍ଥ ହୋଇଛି—ଯେତେ ପାରନ୍ତି ମତେ ଆଘାତ ଦିଅନ୍ତୁ ପଛେ, ହେଲେ ନିରାଶ କରନ୍ତୁ ନାହିଁ—ମୋର ଟଙ୍କା ଦରକାର ।

ପଶୁ—ତୁମେ ଏମିତି କଥା କୁହ ନାହିଁ ମୀନା—ସେଥିରେ ବରଂ ମୁଁ ବିଶେଷ ଆଘାତ ପାଇବି—ଆରେ, ତୁମ କଥାରୁ ମୁଁ ତ ଯାହା ବୁଝୁଛି, ତୁମେ ଏକା ବେଳକେ ଘାବରେଇ ପଡ଼ିଛ—ମୋ କଥା ମାନ ତୁମେ ଭିତରକୁ ଚାଲିଲ ତୁମେ ଆଗ ଟିକିଏ ବସିଲ

ମୀନା—ବସିବାକୁ ମୋର ସମୟ ନାହିଁ ପଶୁପତି ବାବୁ-ଆପଣଙ୍କର ଯଦି କିଛି ଟଙ୍କା ସାହାଯ୍ୟ କରିବାର କଥା ମତେ ଦିଅନ୍ତୁ—ଚାଲିଯିବି—ଡେରି ହେଉଛି ।

ପଶୁ—ଇଏ କେମିତି କଥା ମୀନା—ଦିନେ ନାହିଁ କାଳେ ନାହିଁ ଆଜ ତୁମେ ମୋ ଘରକୁ ଆସିଛ—ମିନିଟେ ପାଞ୍ଚଟା ନ ବସି ଚାଲିଯିବ ? ଏଇଟା ଅସୁନ୍ଦର ନୁହେଁ ମୀନା—ଆସ—(ମୀନାକୁ ଜୋର୍ କରି ଧରି ଭିତରକୁ ଟାଣିନେନ୍ତି—ମୀନା ତାଙ୍କର ଉଦ୍ଦେଶ୍ୟ ବୁଝି ପାରି ନିଜକୁ ତାଙ୍କ ହାତ ମୁଠାରୁ ମୁକୁଳେଇ)

ମୀନା—ଏ କ'ଣ ପଶୁପକ୍ଷ ବାବୁ— ଆପଣ ମୋତେ ବାଧ୍ୟ କରୁଛନ୍ତି କାହିଁକି ? ଓ ! ମୁଁ ବୁଝି ସାରିଲଣି—ଆପଣ ମୋତେ ଠିକ୍ ଦେବେ ନାହିଁ—ମୁଁ ଚାଲି ଯାଉଛି—

ପଶୁ—(ହାଣିଧରି)—ସବସ୍ୱ ଅଜାଡ଼ି ଦେବି ମୀନା—ତୁମରି ପାଦତଳେ ମୋର ସବସ୍ୱ ଅଜାଡ଼ି ଦେବି—ତୁମକୁ ଦେଖିଲି ଦିନୁ ମୋର ସଂସାର ଉପରେ ବିରାଗ ଆସିଛି ମୀନା—ମୋର ବିବାହିତା ସ୍ତ୍ରୀକୁ ମଧ୍ୟ ପାଶୋରି ଦେଇଛି ବହୁଦିନ ଧରି—

ମୀନା—ପଶୁପତି ବାବୁ ! ଆପଣ ଏକଥା କହି ପାରୁଛନ୍ତି । ଆପଣଙ୍କୁ ଟିକିଏ ଲଜ୍ୟା ହଉନି ? ଦୟାକରି ମତେ ଛାଡ଼ି ଦିଅନ୍ତୁ—ମୁଁ ଚାଲି ଯିବି—

ପଶୁ—ତା କେବେ ହୋଇ ପାରେନା ମୀନା । ଆଜି ପର୍ଯ୍ୟନ୍ତ ସୁଯୋଗ ତୁମେ ମତେ କେବେ ଦେଇନ । ଆଜି ଯେତେବେଳେ ସେ ସୁଯୋଗଟା ଆପେ ଆପେ ଆସିଛି, ତାର ଅମର୍ଯ୍ୟାଦା କରିବା କଣ ମୋର ବୋକାମୀ ହବନି ? ତୁମେ ଆସ ମୀନା ଆଉ ଡେରି କରନି—ଟଙ୍କା ତୁମେ ଯାହା ଚାହିଁବ ମୁଁ ଏକା ବେଳକେ ଦେଇ ଦେବି—ହେଲେ ଆଜି ପାଇଁ ତୁମେ ମତେ ବାରଣ କଲେ, ମୁଁ ତୁମକୁ ବାଧ୍ୟ କରିବି—ଜୋର କରିବି ।

ମୀନା—ପଶୁପତି ବାବୁ ! ବନ୍ଦ କରନ୍ତୁ, ମୁଁ ଏ ସବୁ କଥା ଶୁଣି ପାରୁନି—ଆପଣଙ୍କ ଦୟା, ମାୟା, ମମତା ପଛରେ ଏପରି ଏକ ପଶୁତ୍ୱ ଲୁଚି ରହିଛି, ଏ କଥା ମୁଁ ଜାଣି ନ ଥିଲି ।

ପଶୁ—ମୀନା ! (ହାତ ଧରିବା)

ମୀନା—ମୋର ସର୍ବନାଶ ହୋଇଯିବ ପଶୁପତି ବାବୁ—ମୁଁ ସଂସାର ଭିକାରୁଣୀ ହୋଇଯିବ । ଆପଣ ଏତେଟା ନିଷ୍ଠୁର ହୁଅନ୍ତୁ ନାହିଁ । ମତେ ଛାଡ଼ ଦିଅନ୍ତୁ—ମୁଁ ଆପଣଙ୍କ ଗୋଡ଼ ଧରୁଛି ।

ପଶୁ—(ଗୋଡ଼ ଧରିବା ପୂର୍ବରୁ ତୋଳିଧରି) ଆରେ ଏମିତି ପିଲାଙ୍କ ଭଳି କଣ ହେଉଛ ମୀନା—ଆସ ମୀନା-ମୀନା । (ଇମିତି ଟାଣି ଧରିଥିବା ଅବସ୍ଥାରେ ବାହାରୁ ପ୍ରବେଶ କଲା ବଶୁ—ପଶୁପତିବାବୁ ମୀନାକୁ ଛାଡ଼ି ଦେଇଛନ୍ତି—ମୀନା ସଙ୍ଗେ ସଙ୍ଗେ ଘରି ପାଖକୁ ଚାଲି ଯାଇଛି—ପଶୁପତିବାବୁ କୃତ୍ରିମ ଆନ୍ତରିକତା ଦେଖାଇବାକୁ ଆରମ୍ଭ କରିଛନ୍ତି)

ବଶୁ—(ଭିତରୁ) ମୀନା ! (ଦେଖିସାରି) ପଶୁପତି ବାବୁ । (ଚିତ୍କାର କରି)

ପଶୁ—ଆରେ ବଶୁ—କୁଆଡ଼େ ତୁ ବୁଲୁଚୁ । ମା ସିଆଡ଼େ ବେମାର, ମୀନା ଏତେ ଘାର୍ଗି ପଡ଼ିଲାଣି ଯେ ଠିଆ ବି ହୋଇ ପାରୁନି—ମୁଁ ତାକୁ ଧରି ଧରି ଘର ଭିତରକୁ ନେଇ ଯାଉଥିଲି—ଟିକିଏ ବସେଇବା ପାଇଁ—ହେଲେ ମତେ ସମୟ ନାହିଁ ବୋଲି କହି ସେ ଏକାବେଳକେ ବସିବାକୁ ନାରାଜ-ଆଚ୍ଛା, ତୋ ମା ପାଇଁ କେତେଟଙ୍କା ହେଲେ'ହବ କହିଲୁ ?

ବଶୁ—ଏଇଟା ତା ହେଲେ ଆପଣଙ୍କର ପ୍ରକୃତ ରୂପ, ପଶୁପତି-ବାବୁ ? ଏଇଟା ତା ହେଲେ ଆମର ସମାଜ ଆଦରରେ ଗ୍ରହଣ କରେ । ମୁଁ ଜାଣି ନ ଥିଲି—ପ୍ରକୃତରେ ମୁଁ ଗୋଟାଏ ମସ୍ତବଡ଼ ଅନ୍ଧ ।

ପଶୁ—ଆରେ ତୁ ଆଉ କଣ ହେବିଲୁ କି ? ମୋ କଥା ବୋଧହୁଏ ତୁ ବୁଝି ପାରୁନୁ—

ବଶୁ—କେତେ ଟଙ୍କା ଆପଣ ରଖିଛନ୍ତି ? ମୀନା ଭଳି ଗୋଟାଏ ସ୍ତ୍ରୀର ବନମଯୂରରେ ଆପଣ କେତେ ଟଙ୍କା ଦେଇ ପାରିବେ ? ଦଅନ୍ତୁ ? ମୁଁ ହାତେହାତେ ନେଇଯିବ—ଚାଲନ୍ତୁ ତ ଆପଣଙ୍କ ଚେକ୍‌ବୁକଟା ଦେଖିବା—(ଗୋଟାଏ ଧକ୍କା ପକାଇଲେ)

ପଶୁ—ଏ କଣ ବଶୁ ! ତୁ ଗୁଣ୍ଡାମୀ ଆରମ୍ଭ କଲୁଣି ?

ବଶୁ—ଆରମ୍ଭ କରିନି—ମନ ହେଉଛି ତୋର ମୁଣ୍ଡଟାକୁ ଟାଣି ପାଦତଳେ ଚାପି ଦବାକୁ—

ପଶୁ—Shut up—ବେଶି କଥା କହନା—ଜାଣୁ ! ପଶୁପତି ଚାହିଁଲେ, ତୁମ ଭଳି ଭଉଣୀ ଭିଉପୂଙ୍କୁ ବର୍ତ୍ତମାନ ଜେଲରେ ଭର୍ତ୍ତି କରି ଦେଇ ଆସିବ

ବଶୁ—ଏତେ ଗୁଡ଼ାଏ ବୁଦ୍ଧି ତୋ ମୁଣ୍ଡରେ ନାହିଁ ପଶୁପତି ଇମିତି ଗୁଡ଼ାଏ ପ୍ରଳାପ କଲେ ବର୍ତ୍ତମାନ ହୁଏତ ମୁଁ ତୋତେ ଯମପୁରକୁ ପଠେଇ ଦେବ···ତା ପରେ ଯା ହବ ଦେଖାଯିବ—

ପଶୁ—Get out—ବାହାର ଏଠୁ ବଶୁ, ଆଉ—ଗୋଟାଏ ପଦ କଥା ନ କହି ସିଧା ଘରକୁ ପଳା—ଆଉ ମନେ ରଖିଥା, ତତେ ତଳତଳାନ୍ତ କରିବା ପାଇଁ ମୁଁ ଆଜଠୁଁ ଜାଲ୍ ବଛେଇ ରଖିଲି—

ବଶୁ—ନଜେ ତଳତଳାନ୍ତ ହେବା ପୂର୍ବରୁ ବଶୁ ତୋ ପରି କେତେ ଗୁଡ଼ାଏ ଧୂର୍ତ୍ତଙ୍କ ଶବ ଉପରେ ପାଦ ପକେଇ ଯାଉଥିବ, ଏକଥାଟା ତୁ ବି ମନେ ରଖିଥ—(ଚାଲି ଯାଉଥିଲେ)

ପଶୁ—ଆଚ୍ଛା, ମୁଁ ତତେ ଦେଖି ନେଉଛି ।

ବଶୁ—(ଫେରି) କ'ଣଟାଏ ଦେଖିବୁ ? କ'ଣଟା ଦେଖିବୁ ? ତୋର ଏତେ ସାହାସ ? (ଆଗେଇଲା)

ମୀନା—(ରେକ ଧରି) ଭାଇ ! ଥାଉ ଭାଇ ଥାଉ—
ବଶୁ—ଶଇତାନ, ପଶୁ କୋଉଠିକାର—(ଚାଲିଗଲା)
ପଶୁ—All right

※

## ୮ମ ଦୃଶ୍ୟ

(ମୀନା ଘର ଅଗଣା—ବାହାରୁ ଡାକିଲେ ଘରବାଲା ବଟୁବାବୁ)

ବଟୁ—ବଶୁବାବୁ ' ବଶୁବାବୁ ! ( ଭିତରକୁ ଆସିଲେ )

ମୀନା—ଆରେ ବଟୁବାବୁ ଯେ—ରୁହନ୍ତୁ ମୁଁ ବସିବା ପାଇଁ କିଛି ଗୋଟାଏ ଆଣେ ।

ବଟୁ—ଥାଉ ବସିବା ମୋର ଦରକାର ନାହିଁ । ବଶୁବାବୁ କାହାନ୍ତି ?

ମୀନା—କୁଆଡେ଼ ବାହାରକୁ ଯାଇଛନ୍ତି !

ବଟୁ—ମୋ ଘରଭଡ଼ା କଥା କ'ଣ ହେଲା ? ଦିଅ

ମୀନା—ଟିକିଏ ଭାଇ ଫେରନ୍ତୁ ।

ବଟୁ—ରଖହେ ତୁମର ଭାଇ, ମୁଁ ଭାଇ ଫାଇ କାହାକୁ ଚିହ୍ନେନା । ପଶୁପତି ବାବୁ ଜମା ହେଉଥିଲେ ବୋଲି ମୁଁ ଘର ଦେଇଥିଲି ପଶୁପତି ବାବୁ ମତେ ସିଧା ସିଧା ମନା କରି ଦେଲେଣି, ମୁଁ ଆସିଚି ଆଜି ଭଡ଼ା ନେବି, ଏଠୁ ଉଠିବି ।

ମୀନା—ଏତେ ଦିନ ଗଲା ଆଉ ସାତଟା ଦିନ ଅପେକ୍ଷା କରନ୍ତୁ

ବଟୁ—ତୁମେ ପଶୁପତି ବାବୁଙ୍କୁ ଡାକି ଆଣ, ସେ ଜାମିନ ହୁଅନ୍ତୁ, ସାତଦିନ କାହିଁକି, ସାତମାସ ଅପେକ୍ଷା କରିବି

ମୀନା—ଆପଣ ଆମକୁ ବିଶ୍ୱାସ କରନ୍ତୁ ବଟୁବାବୁ !

ବଚ୍ଚୁ—କାହାକୁ ? ବଶୁକୁ କେହି ବିଶ୍ୱାସ କଲେନି ବୋଲି ଆଜିଯାଏଁ ଗୃହକର୍ତ୍ତ୍ରୀ ଖଣ୍ଡେ ଯୋଗାଡ଼ କରି ପାରିଲି ନାହିଁ । ଦୋ ଦୋ ହୋଇ ବୁଲୁଚି—

ମୀନା—ଭାଇ ଆଜି ଆସିଲେ ମୁଁ କହିବି, ଆପଣଙ୍କ ବାକି ଟଙ୍କା ସେ ଆଗ ତୁଟେଇ ଦେଇ ଆସିବେ ।

ବଚ୍ଚୁ—ସେ ତାଙ୍କ ପକ୍ଷ କଥା ଢେର ଶୁଣିଲିଣି ହୋ, ଅଙ୍କ ଭଡ଼ାଟଙ୍କା ଦବ ବୋଲି ତମ ଭାଇ ନେପ୍ଚୁନ ପକେଇ ଆସିଥିଲା—

ମୀନା—ଭାଇ କଣ କରିବେ ଆଜ୍ଞା । ଏ ପର୍ଯ୍ୟନ୍ତ କିଛି ଗୋଟାଏ ଗୃହକର୍ତ୍ତ୍ରୀ ଯୋଗାଡ଼ କରି ପାରୁ ନାହାନ୍ତି ।

ବଚ୍ଚୁ—ବଶୁ ଆଉ ତା ଜୀବନରେ ଗୃହକର୍ତ୍ତ୍ରୀ ପାଉ ନାହିଁ—

ମୀନା—ନାହିଁ ଆଜ୍ଞା, ଏଇ ଦୁଇଦିନ ହେଲା କଣ ଗୋଟାଏ ଯୋଗାଡ଼ କରିଛନ୍ତି ।

ବଚ୍ଚୁ—ହଁ ଯୋଗାଡ଼ କରିବା ଭିତରେ ନସିବୁଦ୍ଦିନ ମିଆଁକୁ ଧରାଧରି କରି ଗୋଟିଏ ରିକ୍ସା ନଉଚି—ଭାଇ ତୁମର ଏଣିକି ରିକ୍ସା ଟାଣିବେ ।

ମୀନା—ଭାଇ ରିକ୍ସା ଟାଣିବେ

ବଚ୍ଚୁ—ତା ହେଲେ ତୁମେଇ କୁହ, ମୁଁ କେମିତି ପାଇବି ମୋର ବାକି ଟଙ୍କା ! ହଉ ତୁମେ ଶୁଣ, ଭଡ଼ା ଦିଅ, ବା ନା ଦିଅ ତୁମେ କାଲି ଭିତରେ ଆଗେ ମୋର ଘର ଖାଲି କର । ତୁମକୁ ଘରଭଡ଼ା ଦେଇ ମୁଁ ବସ୍ତି ବାଲଙ୍କ ଶତ୍ରୁ ହେବାକୁ ବସିଲିଣି । ହଇହେ ପଶୁପତି ବାବୁଙ୍କ ଭଳି ଦେବତାର ଆତ୍ମା ତୁମମାନଙ୍କ ଉପରୁ ଛୁଟି ଗଲାଣି ପରା—ସଫା କଥା କହୁଛି ତୁମେ କାଲି ଦୋସରା ଘର ଦେଖ—

ମୀନା—ସବୁ କୁହନ୍ତୁ ପଛେ ସେତକ କୁହନ୍ତୁ ନାହିଁ । କାଲି ଆମେ ଯାଇ କେଉଁଠି ରହିବୁ ? ବୋଉ ବେମାର, ଟିକିଏ ଭଲ ହେଇ ଯାଉ, ଆପଣଙ୍କୁ ଆଉ କହିବାକୁ ପଡ଼ିବନି—

ବଚ୍ଚୁ—ଉଁ ଇମିତି, ନିଜ ଇଚ୍ଛାରେ ନ ଉଠିଲେ ତୁମେ ସେ କମିତି କାଲି ଭିତରେ ଏ ଘର ଛାଡ଼ି ପଳେଇବାକୁ ବାଟ ପାଇବନି--ତାର ବି ବ୍ୟବସ୍ଥା କରି ଆସିଛି ··ଥାନାବାଲାଙ୍କ ସଙ୍ଗେ ବ୍ୟବସ୍ଥା କରି ଆସିଛି—ହାଜତ ଭିତରେ ନେଇ ଖୁଆଇ ଦେବେ—ପରିଷ୍କାର କଥା ।

ମୀନା—ବାକୀ ଭଡ଼ା କଣ ଆପଣ ନେବେନି ?

ବଚ୍ଚୁ—ସେ କଥା ଦେଖାଯିବ ହେ । ନବୁନି ଆଉ କ'ଣ ଛାଡ଼ିଦବୁ । ଢେର ଗଣି ଆମେ ପଇସା ନେଲୁ ବାଲି । ଆଉ ତୁମେ ମତେ ପାଠ ପଢ଼େଇବ । ଫାଲେ ନଶରେ ଦଆସିଲି ଜାଳି ଦେବା କଥା ରହିଲା--(ବାହାରୁ ପ୍ରବେଶ କଲା ବଶୁ)

ବଶୁ—ମୀନାକୁ କଣ ଧମକ ଦଉଚ ବଚ୍ଚୁବାବୁ ! ଯାହା କହିବାର ମୋତେ କୁହ—ମୁଁ ଆସିଲିଣି ।

ବଚ୍ଚୁ—କହିବି କ'ଣ ହେ ! କାଲି ପରା ଖୁବ୍ ଜୋରରେ କହୁଥିଲ ଆଜି ଟଙ୍କା ଦେବ ବୋଲି । ତମକୁ ଘରଭଡ଼ା ଦେଇ ମୁଁ ବେଶ୍ ବୁଦ୍ଧି ଶିଖିଲିଣି । ଶୀଘ୍ର ଟଙ୍କା ବାହାର କର ! କଥା କହୁ ନାହିଁ ।

ବଶୁ—ଟଙ୍କାତ ନବ ଏତେ ଗରମ ଦେଖଉଚ କାହିଁକି ? ତୁମର କଣ ମାନ ଇଜ୍ଜତ କିଛି ନାହିଁ ! ଘରେ ପଶି ତୁମେ ଗୋଟାଏ ଝିଅ ସାଙ୍ଗରେ ଝଗଡ଼ା କରୁଚ !

ବଚ୍ଚୁ—ବାଃ ଭାରିତ ଇଜ୍ଜତ ତୁମେ ମତେ ଦେଖେଇଲ ! ଟଙ୍କା ନ ଦେଇ ମୁହିଁ ଫୁଟାଣି ଦେଖଉଚ ? କମ୍ 'ଇଜ୍ଜତଦାର

ଲୋକ କି ତୁମେ ? ତୁମକୁ ଇମିତି କଥା କହିବାକୁ ଲାଜ ଲାଗୁନି ? ପକାଅ ମୋ ଟଙ୍କା । କଣ ମିଳିବ ମୋତେ ଏତେ କଥାରୁ ।

ବଣୁ—ମୁଁ ସେ ଟଙ୍କା ଫଙ୍କା କିଛି ଜାଣିନି—ସିଧା ପଳାଅ କହୁଛି—

ମୀନା—(ବାଧା ଦେଇ) ଭାଇ !

ବଣୁ—ନାଇ ତୁ ଦେଖ୍, ଲୋକଟାର ସାହାସ ଦେଖୁଚୁ ? କଣ କହୁଛି ?

ବଟୁ—କ'ଣ ମେଁ ଫତ୍ତରେ କହୁଛି କି ? ହକ ଟଙ୍କା ଅଛି କହୁଛି । ଅରେ, ଆରେ, ଚଣ୍ଟୁପତ୍ତି ବାବୁ ଠିକ୍ କହୁଥିଲେ । ନଜେ ତ ଘଣ୍ଟା ପେଲି ପେଲି ଫେରିଲେ—ଇଏ ଫେରେ ଇଜ୍ଜତ ଦେଖଉଚନ୍ତି ।

ବଣ୍—(ରାଗିଯାଇ) ଏ, ବାହାର ! ବାହାର ଏଠୁ କହୁଛି, କହୁଛି ! ବାହାର ଯା ଏ ଘରୁ—(ଧକ୍କା ମାରିଲେ)

ବଟୁ—କ'ଣ ମାରିବୁ ନା କଣ ? ଭାରିତ ମାରିଲା ବାଲା ।
(ବଣୁ ବଟୁବାବୁଙ୍କୁ ତଡ଼ି ଦେଇ ଆସି ଇତଃସ୍ତତ ବୁଲୁଚନ୍ତି)

ମୀନା—ଭାଇ ! ବୋଉର ଔଷଧ ଆଣିଲ ।

ବଣୁ—(ନୀରବ)
(ଭିତରୁ ବଣୁମା'ର ଚିତ୍କାର ଶୁଣାଗଲା ରୋଗଶଯ୍ୟାରୁ — ମୀନା ! ମୀନା ! )

ମୀନା—ଔଷଧ ଆଣିଲ ନାହିଁ ଭାଇ ? ବୋଉ ତା ହେଲେ କଣ ଔଷଧ ନ ଖାଇ ସଡ଼ି ମଡ଼ି ମରିବ ? ତୁମପରି ପୁଅ ଜନ୍ମ କରି ଔଷଧ ଟିକିଏ ନ ପାଇ ସେ ଦୁଃଖ ଯନ୍ତ୍ରଣାରେ ପଡ଼ିପଡ଼ି ମଲା

ତା ହେଲେ ନେଇଥା ତାର ଭାଗ୍ୟ ସିନା!—ଭାଇ ! କଣ ହେଲେ କଷ୍ଟ କର ଭଲ—

ବଶୁ—ମୁଁ ଆଉ କଣ କରବ ମତେ କହ ? ମୁଁ କଣ ମରବ ? ରକ୍‌ସା ଟାଣିବା ପର୍ଯ୍ୟନ୍ତ ବ ଚେଷ୍ଟା କଲି—ରକ୍‌ସାଟା ଦବ ନେବ ଲି କହିଲି ଫେର ମନା କର ଦେଲ—ମୁଁ ଆଉ କଣ କରିବି ତୁ କହ— (ବାହାରୁ ଡାକଲେ ଗୃଜଳ ବାଲ )—

ଭିଖାରୀ—ବଶୁ ! ବଶୁ !

ବଶୁ—କିଏ ? ଓଃ, ଗୃଜଳ ବାଲ —ମୀନା ମୁଁ ପାଗଳ ହୋଇଯିବ ମୀନା ମୁଁ ପାଗଳ ହୋଇଯିବି—ଯା ମୀନା ତାକୁ କହିଦବୁ ଭାଇ ଘରେ ନାହାଁନ୍ତି—ଯା (ଭିତରକୁ ଗୃଲଗଲେ)

ଭିଖାରୀ—(ପ୍ରବେଶ କରି) ତୁ ଲୁଚିଲେବ ମୁଁ ତତେ ଗ୍ରୁଡ଼ି ଦଉନ ବଶୁ ! ବେକରେ ଗାମୁଛା ପକାଇ ବୋଦା ଘୋଷରା କରି ଆଣିବ—ଘରେ ଥାଇ ମନାକରି ଦବାକୁ ଭଉଣୀକୁ ବୁଦ୍ଧି ଦଉଚୁ ଚୋର—ଦଗାବାଜ—ମିଛୁଆ—

ମୀନା—ଟିକିଏ ମୁହଁ ସମ୍ଭାଳ କଥାବାର୍ତ୍ତା କର !

ଭିଖାରୀ—ଏଁ, ଗଧ ଦେହରେ ବାଧା ଲାଗିଗଲା—ଯଦି ଏତେ ବାଧୁଚି ମୋ ବାକି ଟଙ୍କାତକ ପକେଇ ଦିଅ—ଦକ ତୁମ ପେଟକୁ ଦାନା ଦେଇଚି, ତୁମକୁ ଲଜମାଡୁନ, କହେ କଣ ବଶୁ ! ଲୁଚିଲୁ କାହିଁକି ? ସାମନାକୁ ଆ !

ବଶୁ—(ପ୍ରବେଶ) ତୁମେ ଦୟାକରି ଆଜ ଯାଅ ଭିଖାରୀ

ଭିଖାରୀ—କଣ ଖାଲି ହାତରେ ଫେରିଯିବ ? ଭିକ ମାଗିବାକୁ ଆସିଚି କି ?

ବଶୁ—ନୟନ ପକେଇ କହୁଚି—ମୋଠି ଆଜ କିଛି ନାହିଁ—ଖାଲି ତୁମର ନୁହେଁ-ବହୁତ ଲୋକଙ୍କର ମୋ ଉପରେ ପଇସା ଅଛି ।

ଢ଼େର ଚେଷ୍ଟା କରିଚ—ମିଛ କହି ତୁମକୁ ହଇରାଣ କରିବା ଅପେକ୍ଷା, ସତ କହୁଚି କଣ୍ଟୁ ଗୋଟାଏ ବ୍ୟବସ୍ଥା କଲେ ତମ ଗୋଡତଳେ ପଇସା ନେଇ ହାଜର ହେବ ।

ଭିକାରୀ—ଗଲି ମୋ କୂଳ ଉଦ୍ଧାର ହେଇଯିବ ସେଇଠୁ—ସ୍ୱର୍ଗ କୁ ଚାଲିଯିବ—ମୁଁ ମନା କରୁଚି—ଭାଇ ଭଉଣୀ ଯାଇ ହରିଲୁଟ କଲାଭଳି ମୋ ଦୋକାନରୁ ବୋହି ଆଣିଲେ—ଦେଢ଼ଶ ଟଙ୍କା ଯଦି ମୁଁ ଏଇନେ ସୁଧ ଲଗେଇ ଥାନ୍ତି—

ମୀନା—ସୁଧ ମୂଳ ଆପଣଙ୍କର କଣ୍ଟୁ ବୁଡିବ ନାହିଁ—

ଭିକାରୀ—ହଁ ତୁମ ଭାଇ, ଭଉଣୀଙ୍କର ଦେହେରା କହି ଦଉଚି— କଣ ବଶୁ ? ଆଜ ମୋ ଟଙ୍କା ଦଉଚୁ କି ନାହିଁ ?

ବଶୁ—ବିଶ୍ୱାସ କର—ମା' ଟା ରୋଗରେ ସଢ଼ୁଚି ଯେ, ଗୋଟିଏ ପଇସାର ମଧ୍ୟ ସୁଟିନା ଔଷଧ ଟିକିଏ ଆଣିବାକୁ—

ଭିକାରୀ—ତୋ ମା ମଲେ କି ବଞ୍ଚିଲେ ମୋର କଣ ଯାଏ ହେ— ତୁ ମୋ ବାକୀ ପଇସା ଦବୁକି ନାହିଁ କହିଲୁ ?

ବଶୁ—ମତେ ମାର, ପିଟ, ହାଣ, କାଟ, ଯାହା କରିବ କର— ହେଲେ ମୋ ପାଖରେ ଗୋଟିଏ ବୋଲି ପଇସା ନାହିଁ—

ଭିକାରୀ—କାହିଁକି ଚୋରି କରୁନୁ—

ମୀନା—ଆପଣ ଏମିତି କଥା କାହିଁକି କହୁଛନ୍ତି ?

ଭିକାରୀ—ମୋର ହକ୍ ପାଇବାର ଅଛି ବୋଲି କହୁଚି । ଆଉ କ'ଣ ମୋଫତରେ କହୁଚି । ଯଦି ନିଜର ରୋଜଗାର କରିବାର ଉପାୟ ନାହିଁ, ଭଉଣୀଟାର ତ ରୂପ ବୟସ ଅଛି, ତାକୁ ହେଲେ ଦାଣ୍ଡିକୁ ଛାଡ଼ି ଦେ ?

ବଶୁ—(ରାଗିଯାଇ) ଭିକାରୀ ! ବାହାର—ଏ ଘରୁ ଚାଲିଯା ବାହାର—(ଧକ୍କା ମାରି ତଡ଼ିଦେଲେ) ।

ଭିକାରୀ—ହଉ କମିତ ଟଙ୍କା ନ ଦବୁ ଦେଖିବା—ମୁଁ ବି କଟକ ଜିଲ୍ଲା ଲୋକ—ଦେଖିବା (ପ୍ରସ୍ଥାନ)

(ବଶୁ କଣ କରିବ କିଛି ଠିକ୍ କରି ପାରିଲେ ନାହିଁ—ଉତ୍ତ୍ୟକ୍ତ ହୋଇ ଦ୍ରୁତ ଗତିରେ ପାଦ କ୍ଷେପଣ କରୁଥିଲେ—ଭିତରୁ ପୁଣି ମା'ର ଡ଼ାକ ଶୁଭିଲା । )

ମୀନା—ଭାଇ ! ମାନ ସମ୍ମାନ ସବୁ ଯାଉ ପଛେ, ହେଲେ ତୁମେ କିଛି ଗୋଟାଏ ସଂସ୍ଥା ଧର—ମା' ବେମାର—ଶ୍ରେଷ୍ଠ ଘାଇ ପର ଦୋକନରେ ଅଇଁଠା ଗୋଟାଇଲା—ଟଙ୍କା ପାଇଁ ଘରବାଲା ଆସି ଧମକ ଦେଇଗଲା—ଧୋବା, ଭଣ୍ଡାରୀ ସମସ୍ତେ ଅଡ଼ି ବସିଲେଣି—ଶେଷକୁ ଭାଇ ଆଗରେ ଭଉଣୀକୁ ବେଶ୍ୟା ହବାକୁ ଲୋକେ ଇଙ୍ଗିତ ଦେଇଗଲେ—ଆଉ କ'ଣ ହେଲେ ତୁମ ମନ ମାନିବ ଭାଇ ? ତୁମ ଗୋଡ଼ ଧରୁଚି— ତୁମେ କେଉଁଠୁ ହେଲେ କିଛି ଯୋଗାଡ଼ କରି ଟଙ୍କା ଆଣ— ତୁମକୁ ମୋ ରାଣ ଭାଇ—

ବଶୁ—ମୀନା ! (ଅବାକ୍ ହୋଇ ମୀନାକୁ ଚାହିଁଲେ—ଆଖିରେ ତାଙ୍କର ଯେପରି ନିଆଁ ଜଳି ଉଠୁଥାଏ )

ମୀନା—ଆମେ ପଛେ ଭିକମାଗି ଖାଇବା—ହେଲେ ମା ବୁଢ଼ୀକୁ ବଞ୍ଚେଇବା ଆମର କର୍ତ୍ତବ୍ୟ—ଆଗ ତା ପାଇଁ କିଛି ହେଲେ କର ଭଲା—ନ ହେଲେ ସେ ମଲାବେଳେ ଅଭିଶାପ ଦେବ— ଆମେ ସେଥିରେ ସଡ଼ି ସଡ଼ି ମରିବା ତା ଅପେକ୍ଷା ବରଂ ମୋର ଆଜଠୁଁ ମରିଯିବା ଭଲ—ମତେ ତୁମେ ଗଳା ଚିପି ମାରିଦିଅ ଭାଇ—ତା ପରେ ତୁମେ ନିଶ୍ଚିନ୍ତ ହୋଇ ବସିଥାଅ—ମୁଁ ତାର ବିକଳ ଦେଖି ପାରୁନାହିଁ ।

ବିଶୁ—ମୀନା ! ତୁ ଶୁଣ ହ ମୀନା—ତୁ ଶୁଣହ—ମୀନା ତୁ ଥା, ମୁଁ ଆସୁଛି । କେତେ ଟଙ୍କା ତୋର ଦରକାର ? ଲକ୍ଷେ ହେଲେ ହବ ? ମୁଁ ଏବେ ନେଇକରି ଆସୁଛି—ମୁଁ ଟଙ୍କା ଆଣିବି ମୀନା—ମୁଁ ଟଙ୍କା ଆଣିବି—ତୋର ବାହାଘର କରିବି—ବୋଉ ଗୋଡ଼ ଉପରେ ଗୋଡ଼ ପକେଇ ବସିବ—ହୁକୁମ ଜାରି କରିବ—ବାବୁଆ ପାଠ ପଢ଼ିବ—ରଜା ହବ—ମୁଁ ଟଙ୍କା ଆଣିବି—ମୀନା—ମୁଁ ଲକ୍ଷେ ଟଙ୍କା ଆଣିବି—ମୁଁ ଯାଉଛି—

ମୀନ—(ଭୟରେ ଚାଣିଧରି) ତୁମେ କୁଆଡ଼େ ଯିବ ଭାଇ ?

ବିଶୁ—ମୁଁ ଠିକ୍ ଯାଗାକୁ ଯାଉଛି ମୀନା—ତୁ ଭିତରକୁ ଯା—ମୁଁ ଠିକ୍ ଯାଗାକୁ ଯାଉଁଛି—ତୁ ଯା—

(ମୀନାକୁ ଠେଲି ଦେଇ ଖୁବ୍ ବେଗରେ ଦୌଡ଼ି ଘରୁ ବାହାରି ଗଲେ )

—ପରଦା—

---

## ୪ର୍ଥ ଦୃଶ୍ୟ

(ନିସ୍ତବ୍ଧ ରଜନୀର ଅନ୍ଧକାରକୁ ଭେଦ କରି ପାଗଳ ପରି ବିଶୁ ଛୁଟି ଗୁଲିଥାଏ—ଲକ୍ଷଗ୍ରାନ ବୋଲି ଜଣା ଯାଉଥିଲେ ମଧ ତା ଭିତରେ ଲୁଚି ରହିଥିବା ଦୃଢ ଲକ୍ଷଟି ତାକୁ ପାଗଳ କରି ଦେଇଥିଲା—ମଞ୍ଚ ଆଲୋକିତ ହେଲା ବେଳକୁ ଦେଖାଗଲା—ବିଶୁ କ୍ଷୀପ୍ର ଗତିରେ ଏକ ନିଶ୍ବାସରେ ଆସି—ସେ ଦାଗୀର ଘରର ଦରଜାଟିକୁ ଧକ୍କା ମାରି ଭାଙ୍ଗିବାକୁ ଚେଷ୍ଟା କରୁଥାଏ—ତାର ଦୁର୍ବଳ ଶରୀରଟିର

ସମସ୍ତ ଶକ୍ତି ସେ ଲଗେଇ ଦବାକୁ ଚେଷ୍ଟା କରୁଥାଏ— କବାଟଟା ମଧ୍ଯ ଏଣିକି ଖସି ପଡ଼ିଲା । ବଣ୍ଟୁ ଭିତରକୁ ପଶିଯାଇ ଗୋଟାଏ କୋଣରେ ଥୁଆ ହୋଇଥିବା ବଡ଼ ଟ୍ରଙ୍କଟା ଧରି ବାହାର ଆସିଲା ବେଳେ "ଦାଗୀ" ଗୋଟାଏ ବଡ଼ ଛୁରୀ ଧରି ଦରଜା ଆଗକୁ ଦେଖେଇ ପାଖକୁ ଲୁଚି ଠିଆ ହୋଇ-ଥାଏ । ବଣ୍ଟୁ ମଧ୍ଯ ସେ ଛୁରୀକୁ ଦେଖି ଭୟ ନ କରି ଖୁବ୍ ଜୋରରେ ଗୋଟାଏ ଘୁଷୁରିଏ ପକାଇଲା—ଛୁରୀ ଖସି ପଡ଼ିବାରୁ ବଣ୍ଟୁ ଛୁରୀଟିକୁ ମାଡ଼ି ବସିଲା—ତା ଉପରେ ଦାଗୀ—ଟିକଏ ଧସ୍ତା ଧସ୍ତି ପରେ ଦାଗୀ ଛୁରୀଟିକୁ ଛଡ଼ାଇ ନ ପାରି ଠିଆ ହୋଇ ଆନନ୍ଦରେ ଖୁବ୍ ଯୋରରେ ହସିଲା ଓ କହିଲା )

ଦାଗୀ—ସାବାସ—ଅବ୍ ରସ୍ତେ ପର ଆଗୟା ବେଟା ! ହା-ହା-ହା—

ଡ୍ରପ୍

# ଦ୍ୱିତୀୟ ଅଙ୍କ

## —୧ମ ଦୃଶ୍ୟ—

( କଳ୍ପତରୁ ମହାନ୍ତିଙ୍କ ପ୍ରାସାଦ—ଆମେରିକା ଫେରନ୍ତା ଜାମାତାଙ୍କର ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ଘରଟି ସୁସଜ୍ଜିତ—ଲିଲି ଓ ଲିଲିର ବନ୍ଧୁ ଜଲି, ଦୁହେଁ ସୁସଜ୍ଜିତା—ସ୍ୱପ୍ନକୁମାରଙ୍କର ଅପେକ୍ଷାରେ—ଲିଲି କେବଳ ନିଜର ଘଣ୍ଟା ଦେଖୁଚନ୍ତି ଓ ବାହାର ଦରଜାକୁ ଲକ୍ଷ୍ୟ କରୁଚନ୍ତି )

ଲିଲି—ମୋର ଧାରଣା ଥିଲା ଭଦ୍ର ଲୋକ ଯେତେବେଳେ ଆମେରିକାରୁ ଫେରିଚନ୍ତି, ଆଉ କିଛି ନ ହେଲେବି ଅନ୍ତତଃ ସମୟ ଜ୍ଞାନଟା ଅର୍ଜ୍ଜନ କରି ଆସିଥିବେ ।

ଜଲି—ତୋର ଆବେଗ, ଉତ୍କଣ୍ଠା, ପ୍ରେମ ଭିକାରୁଣୀ ଗୋପୀ, ଶକୁନ୍ତଳା ଇତ୍ୟାଦିଙ୍କୁ ବି Cross କରି ଗଲାଣି, ଦେଖୁଚି ମୋର ଜ୍ୱାଇଁ ପାଇଁ ମୁଁ ଯେତେ ବ୍ୟସ୍ତ ନୁହେଁ, ସ୍ୱପ୍ନ-କୁମାରଙ୍କ ଉପସ୍ଥିତି ପାଇଁ ତୁ ବେଶି ବ୍ୟସ୍ତ ।

ଲିଲି—କିମିତି ନ ହେବି କହିଲୁ ? ଦିନ ୫ଟାରେ ଆସିବା ଲୋକ, ଆସି ୬ଟା ବାଜିବା ଉପରେ—ଜୀବନରେ ଯାହାର ସମୟ ଜ୍ଞାନ ହୋଇନି ସେ କଣ ମଣିଷ ହବ ନା ଦୁନିଆରେ ନିଜକୁ ପ୍ରତିଷ୍ଠିତ କରି ପାରିବ ।

ଜଲି—ଧୀରେ, ଧୀରେ ଲିଲି—ସ୍ୱପ୍ନକୁମାର ହୁଏତ କିଛି ଅସୁବିଧାରେ ପଡ଼ି ଯାଇଥିବେ—ନଚେତ୍ ନିଶ୍ଚୟ ଜାଣି ନ ଥିବେ ଯେ ତାଙ୍କର ଭାବୀ ଅର୍ଦ୍ଧାଙ୍ଗିନୀ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ବିରାଟ ଆୟୋଜନ କରି ଅପେକ୍ଷା କରିଛନ୍ତି ତା ନ ହେଲେ ଏ ଉତ୍ସବର ସୁବିଧା ହେବା ସାଙ୍ଗକୁ ଜଣେ ତନ୍ୱୀ ତରୁଣୀର ସାନିଧ୍ୟ—ଏ ସୁଯୋଗ, କୌଣସି ଅବିବାହିତ ଯୁବକ ଛାଡ଼ି ଦେଇ ପାରେ ?

ଲିଲି—ତୁ ଜାଣୁନା ଜଲି—ଆମେରିକାରୁ ନାଁ କରି ଫେରିଛନ୍ତି ବୋଲି ତାଙ୍କର ଗୋଡ଼ ଆଉ ତଳେ ଲାଗୁନି—ମାସେ ହବ ଫେରିଲେଣି-ଦିନେ ହେଲେ ଆମ ଘରର ନିସୀମା ପର୍ଯ୍ୟନ୍ତ ମାଡ଼ିଲେନି—ଡାକି ଯିବାକୁ ବାପା ମତେ ଲଗେଇ ଥିଲେ—ମୁଁ କିନ୍ତୁ ରାଜି ହେଲିନି

ଜଲି—ଠିକ୍ କରିଚୁ—କେବେ ଯିବୁନି—ତା ହେଲେ ହାଲୁକା ହୋଇ ଯିବୁ—ବିବାହ କରି ଯଦି ସ୍ୱାମିକୁ ହାତ ମୁଠାରେ ରଖି ନ ପାରିଲୁ, ତା ହେଲେ ତୁ ଫେଲ କଲୁ—ସ୍ୱାମୀ ଆରାଧ୍ୟ ଦେବତା ବୋଲି ଯଦି କେହି ଭାବୁଥାଏ···

ଲିଲି—ଗୁଲି ମାର ସେ ମୃତ ଶାସ୍ତ୍ର—ମୁଁ Care କରେନି ସେ ସବୁକୁ—ସେ ଗୁଡ଼ା ସବୁ ସେଇ ଜାନକୀ, ସାବିତ୍ରୀଙ୍କୁ ପୋଷାଏ —କହିଲୁ ଜଲି—ହେଲା ବା ସ୍ୱାମୀ—କହି ଦେଲା ବୋଲି ଜଳନ୍ତା ନିଆଁକୁ ପଶିଯିବା ? କି ଅଜବ ଖେୟାଲ—ସ୍ୱପ୍ନ କୁମାରଙ୍କର ଦାମ ବଢ଼େଇ ଦେଇଛନ୍ତି ବାବା—

ଜଲି—ହେଇ ପାରନ୍ତି ସ୍ୱପ୍ନକୁମାର ଜଣେ ମେଧାବୀ ଛାତ୍ର, ଆମେରିକା ଫେରନ୍ତା—ତୁ ବି ତ ଜଣେ ଲକ୍ଷପତିର ଏକମାତ୍ର କନ୍ୟା—

ଲିଲି—ବୁଝିଲୁ ଜଲି ! ଭଦ୍ରଲୋକଙ୍କୁ ବାବା ପ୍ରସ୍ତାବ ଦେଲେ, ଗୋଟାଏ ନୂଆ ଡ଼ାକ୍ତରଖାନା ତିଆରି କରିଦେବେ—କିନ୍ତୁ ସେ ରାଜି ନୁହନ୍ତି । ଶୁଣିଲି ଗୋଟାଏ ଭଡ଼ାଘର ଯୋଗାଡ଼ କରିଛନ୍ତି ଡ଼ାକ୍ତରଖାନା ଖୋଲିବେ—ଇଲେକ୍‌ଟ୍ରିକ୍ ନାହିଁ-ପଙ୍ଖା ନାହିଁ—ଆଡ଼ା ନାହିଁ--ଆଡ଼ମ୍ବର ନାହିଁ—ଆମେରିକା ଯାଇଛନ୍ତି ସତ, ହେଲେ ମୁଁ ପରିଷ୍କାର କହିବି, ତାଙ୍କ ଦେହରୁ ଦେଶୀ ଗନ୍ଧ ଏ ଯାଏ ଯାଇନି-ଯୁଆଙ୍କର ଉଚିତ ଥିଲା ମଫସଲକୁ ଯାଇ ଗରୁ, ଚେର, ମୂଳ ସାଉଁଟି କବିରାଜି କରିବା—

ଜଲି—ପରବାୟୁ ନାହିଁ ·ଲିଲି—ଆଜି ମୁଁ ସ୍ୱପନ କୁମାରଙ୍କୁ ସତର୍କ କରି ଦେଉଚି—ଆଧୁନିକ, ଶିକ୍ଷିତା ଲିଲିର ସ୍ୱାମୀ ହେବା ପାଇଁ ଯୋଗ୍ୟତା ହାସଲ କରନ୍ତୁ—
(ବାହାରୁ ଡ଼ାକି ଡ଼ାକି ଆସିଚି ଗିଲୁ)

ଗିଲୁ—ଦେଈ !! ଦେଈ !

ଲିଲି—ଏଇ ମୁଁ ତୋ ଆଗରେ—କ'ଣ ଭୂଷିବୁ ଭୂଷ—

ଗିଲୁ—ହେଇଟି ଦେଈ—ତମ ବଲିଡି ବର ଆସୁଛନ୍ତି—

ଜଲି—ମୋ ରାଣ, ଆଉ ଥରେ ଭୂଷିଲୁ ଭଲ୍ଲୁକ କିଏ ଆସୁଛନ୍ତି ?

ଗିଲୁ—ତମର ବୁଝିବା ଦରକାର ନାହିଁ--ମୋ ଦେଈ ବୁଝିଲେଣି—ଦେଈ ମ--ଥିର ହେଇ ଠିଆ ହେଇ ରହିଚ କଣ ମ ?

ଲିଲି—ଆଉ କଣ ନାଚିବ ?

ଗିଲୁ—ମଲା, ମାସେକ ଆଗରୁ ନାଚ ନାଚ ଘର ଦ୍ୱାର ଭାଙ୍ଗି ପକାଉଥିଲ, ତୁମ ବଲିଡି ବରକୁ ନାଚ ଦେଖାଇବା ପାଇଁ—କେତେ ରାଜି ହେବନି କି ଦେଈ ?

ଜଲି—କେଉଁ ଯାତ୍ରା ଦଳରୁ ଆମଦାନୀ କରିଚୁ ଲିଲି ?

ଲିଲି—ଯା ଭୋଲୁ ! ନିକଲ ଏଠୁ । (ଭୋଲୁ ଚାଲି ଯାଉଥିଲା )

ଜଲି—ରହ ରହ ଭୋଲୁ ! ତୋ ଦେଶର ବଲାଙ୍ଗୀ ବର କେଉଁଠି ?

ଭୋଲୁ—ଅବ ପହଁଞ୍ଚି ଯିବେ ସେ ଦେଖନ୍ତୁ —ଆଖି ଛଇଁ କହୁଚି ଦେଖ—ମତେ କ'ଣ ପାଖରୁ ଘୁଞ୍ଚଉଥିଲେ—ହେଇଟି ଦେଖ ସରିଗଲା ମୋ ଚାକରୀ—ବାବୁଙ୍କୁ ତ କହିବ—ମୋ ପିଠିରୁ ଛାଲ ଉଠେଇ ଦେବେ ଏଇନେ—ଦେଖ ତମେ ସଜବାଜ ହଉଥାଅ କି—ମୁଁ ଆଗ ବାବୁଙ୍କୁ ଖବରଟା ଦେଇ ଆସେ-ବାବୁ ! ବାବୁ ( ଚାଲିଗଲା )

ଜଲି—ବହୁଦିନର ସଞ୍ଚିତ ଆଶା ଆକାଂକ୍ଷା ପୂରଣ କରିବା ପାଇଁ ଆଜି ପ୍ରଥମ କରିଆସୁଛନ୍ତି ସ୍ୱପ୍ନକୁମାର, ତୋର ଆତିଥ୍ୟ ଗ୍ରହଣ କରିବେ—ସତ କହିଲୁ ଲିଲି—ତୋର ମନଟା କେମିତି ହଉଚି—ସ୍ୱପ୍ନିଲ ରଙ୍ଗିନ ମନ ସେଇ ତରୁଣୀଙ୍କୁ ଚଉଠି ଖାତରେ ପ୍ରେମ ନିବେଦନ କରିବା ପାଇ ଆଜଠୁ ଅସ୍ଥିର ହୋଇ ଉଠୁଚି କି ନାହିଁ ?

ଲିଲି—ଦୂର୍ ପାଗଳ—(ପ୍ରବେଶ କଲେ ପଶୁପତି ବାବୁ )

ପଶୁ—ଲିଲି ଦେବୀ ଆପଣମାନେ ପ୍ରସ୍ତୁତ ତ ? ଏଇ ସ୍ୱପ୍ନକୁମାର ବାବୁ ଆସୁଛନ୍ତି—( ବାହାରକୁ ଲକ୍ଷ୍ୟ କରି ) ଆସନ୍ତୁ ଆଜ୍ଞା ଭିତରକୁ ଆସନ୍ତୁ—ସମସ୍ତେ ଆପଣଙ୍କ ଅପେକ୍ଷାରେ— ( ଭିତରକୁ ଆସିଲେ ସ୍ୱପ୍ନକୁମାର—ସୁସ୍ଥ, ସବଳ ନବଡମ୍ବର ମୁହଁରେ ଗାମ୍ଭୀର୍ଯ୍ୟ )

ଜଲି—ଆପଣଙ୍କ ଦର୍ଶନ ଅଭିଳାଷରେ ଅକିଞ୍ଚନ ବହୁକ୍ଷଣରୁ ଅପେକ୍ଷା କରିଚି । ନମସ୍କାର—

ପଶୁ—ଏ ହେଉଛନ୍ତି ସହରର ବିଶିଷ୍ଟ ବ୍ୟବସାୟୀ ପତିତପାବନ ତ୍ରିପାଠିଆଙ୍କର ଏକମାତ୍ର କନ୍ୟା Miss ଜଲି, ଆଉ ଲିଲି ଦେବୀଙ୍କ ସାଙ୍ଗ—

ଜଲି—Glad to meet you—(Hand shake କଲେ)

ପଶୁ—ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ମିସ୍ ଲିଲି ତାଙ୍କର ସାଙ୍ଗମାନଙ୍କ ସହିତ ଆପଣଙ୍କର ଆପେକ୍ଷା ଫେରିବା ପୂର୍ବରୁ ପ୍ରସ୍ତୁତ ହୋଇ ରହିଛନ୍ତି—

ସ୍ୱପ୍ନ—ବାସ୍ତବିକ ମୁଁ ବଡ଼ ଲଜ୍ଜିତ—ମାସେ ହେଲା ଆସିଲିଣି ସତ, —ଆପଣମାନେ ବହୁବାର ଖବର ଦେଇଥିଲେ ସୁଦ୍ଧା, ମୁଁ ସମୟ କରି ପାରି ନ ଥିଲି—

ପଶୁ—ଆଉ ତେବେ କାହିଁକି ଲିଲି ଦେବୀ? ହଁ ଡ଼ାକ୍ତର ବାବୁ, ଲିଲି ଦେବୀଙ୍କର ସାଙ୍ଗମାନେ, ଗୋଟାଏ କଣ ନାଚର ବ୍ୟବସ୍ଥା କରିଚନ୍ତି—ଆଉ ମୁଁ ଜୋର କରି କହିବି, ଆପଣ ହୁଏତ ଇମିତି ନାଚ ଦେଖି ନ ଥିବେ—ମୁଁ ନିଜେ ରିହର୍ସାଲ୍ ଦେଖିଚି—ସତକଥା କହିବାକୁ ଗଲେ ନୃତ୍ୟ ଯେ ଏତେ ଆକର୍ଷଣୀୟ ହୋଇ ପାରେ—ଏଇଟା ମୋର ଧାରଣା ନ ଥିଲା—

ସ୍ୱପ୍ନ—ଏଇସବୁ କଳା ପ୍ରତି ମୋର ଗଭୀର ଅନୁରାଗ ଥିଲେ ମଧ୍ୟ ମୋର କାର୍ଯ୍ୟ ବ୍ୟସ୍ତତା ଭିତରେ ମୁଁ ସମୟ କରି ପାରେ ନା—ଆପଣ ତ ନିଜେ ଦେଖିଛନ୍ତି ପଶୁପତି ବାବୁ—ମୁଁ କମିତି ଭାବରେ, ଆଉ କେତେ ସମୟ ପାଇଁ ଆସିଚି—

ପଶୁ—ନାଁ, ନାଁ, ଡ଼ାକ୍ତରବାବୁ—ଆପଣ ଆଜି ସେମାନଙ୍କୁ ନିରାଶ କଲେ ସେମାନେ ହତୋତ୍ସାହ ହୋଇ ପଡ଼ିବେ—

ଜଲି—କର୍ମମୟ ଜୀବନରେ ମନକୁ ଟିକଏ ହାଲୁକା କରିବା ପାଇଁ ସ୍ୱପ୍ନକୁମାରଙ୍କ ଡ଼ାକ୍ତରୀ ବିଜ୍ଞାନ କ'ଣ କହେନା ?

ଲିଲି—ଆଜି ଥାଉ ପଶୁପତି ବାବୁ—ଆଉ ଦିନେ ତାଙ୍କର ସମୟ ହେଲେ, ଖବର ଦେଲେ ଆମେ ଯଦି ପାରିବୁ ତ ବ୍ୟବସ୍ଥା କରିବୁ—

ପଶୁ—ତା ହବ ନ ଡ଼ାକ୍ତରବାବୁ—ଆପଣଙ୍କୁ ଆଜି ନାଚ ଦେଖି ଯିବାକୁଇ ପଡ଼ିବ—ତା ନ ହେଲେ ଲିଲି ଦେବୀଙ୍କର ଆଜି ଖିଆ ପିଆ ସବୁ ବନ୍ଦ—ତା ସଙ୍ଗେ ସଙ୍ଗେ ବାବୁଙ୍କର ମଧ୍ୟ ଅନଶନ To speak the truth—ଆପଣଙ୍କୁ ନାଚ ଦେଖେଇବା ପାଇଁ କେବଳ ସମୟ ନଷ୍ଟ କରି ନାହାନ୍ତି—ଯଥେଷ୍ଟ ଖର୍ଚ୍ଚ ମଧ୍ୟ କରି ସାରିଛନ୍ତି—ତେଣୁ ଆପଣ ନାଚ ନ ଦେଖିଲେ ସେମାନେ ଆଘାତ ପାଇବେ—

ସ୍ୱପ୍ନ—ଆମର ଶିକ୍ଷା ଦୀକ୍ଷା ଥାଇ, ଆମେ ଇମିତି ଛୋଟିଆ ଛୋଟିଆ କଥାରେ ଏତେ ଭାବପ୍ରବଣ ହେଲେ, ବାସ୍ତବ ଦୁନିଆରେ ଆମର ସତ୍ତା ରହିବ ନାହିଁ ।

ଜଲି—ହେଲେ ପଶୁପତି ବାବୁ ! ଦୁନିଆରେ ସମସ୍ତେତ ସ୍ୱପ୍ନକୁମାରଙ୍କ ଭଳି ମେଧାବୀ ଗ୍ରନ୍ଥ କ୍ଲୀଟ ନୁହନ୍ତି ଯେ ଚବିଶ ଘଣ୍ଟା ଖାଲି ଜ୍ଞାନ ଆହରଣ କରୁଥିବେ ? ସମାଜ ଭିତରେ ରହି ଚଳିବାକୁ ହେଲେ ସାମାଜିକତା ରକ୍ଷା କରିବା କ'ଣ ପ୍ରୟୋଜନ ହୁଏନା ? ଅବଶ୍ୟ ଆମ ମହାମାନ୍ୟ ଅତିଥି ଯଦି ସମାଜ ଛାଡ଼ି ଅଗ୍ନ୍ୟାଅଗ୍ନି ବନସ୍ତରେ ଯାଇ ତପସ୍ୟା କରନ୍ତି ତା, ହେଲେ ମୋର କିଛି କହିବାର ନାହିଁ—

ପଶୁ—ଆରେ ! ଆପଣମାନେ ଠିଆ ହୋଇ ରହିଲ ଯେ ? ବସନ୍ତୁ ବସନ୍ତୁ—

ସ୍ୱପ୍ନ—( ଗୋଟିଏ ସୋଫା ଉପରେ ବସି ପଢ଼ୁଥିବା ପରେ ଲିଲିକୁ ଲକ୍ଷ୍ୟକରି )—Excuse me—

ଲିଲି—No mention—(ବସିଲେ )

ସ୍ୱପ୍ନ—ଦେଖନ୍ତୁ ପଶୁପତି ବାବୁ ! ମୋ ଭଳି ଜଣେ ଲୋକ, ଯେ କଳାର ଧାର ଧାରେନା ତା ଆଗରେ କଳାର ପରିବେଷଣ କରି ଆପଣମାନଙ୍କର ସାଧନାର ଅସଦବ୍ୟବହାର କରିବେ ନାହିଁତ ? ଦୟା କରି ଶୀଘ୍ର ବ୍ୟବସ୍ଥା କଲେ ଉଭୟ ପକ୍ଷର ଉଦ୍ଦେଶ୍ୟ ସଫଳ ହୁଅନ୍ତା । ମୋ ପାଇଁ ରୋଗୀ ସବୁ ଅପେକ୍ଷାରେ ଥିବେ ।

ପଶୁ—ଲିଲି ଦେବୀ ! ଯ ଆନ୍ତୁ । ସଂସ୍ତଙ୍କୁ ପ୍ରସ୍ତୁତ ହବାକୁ କୁହନ୍ତୁ—

ଲିଲି—ନାହିଁ ପଶୁପତି ବାବୁ—ଆଜି ଥାଉ ଆଉଦିନେ ଦେଖିବେ ।

କଲି—ଆପଣ ବ୍ୟସ୍ତ ହୁଅନ୍ତୁ ନ ପଶୁପତି ବାବୁ—ନାଚ ଆଜି ନିଶ୍ଚୟ ହବ—(ଲିଲିକୁ) ଶୁଣ ଲିଲି—କୃତି ଗୃହସ୍ଥମାନେ ସାଧାରଣତଃ ନାଚଗୀତ ପସନ୍ଦ କରନ୍ତି ନାହିଁ—କିନ୍ତୁ ଆମେ ଯଦି ସେଭଳି ଜଣେ ମେଧାବୀ ଗୃହସ୍ଥଙ୍କୁ ମନ୍ତ୍ରମୁଗ୍ଧ କରି ପାରିବା ତାହେଲେ ଯାଇ ଆମର ବାହାଦୁରୀ । ମୁଁ ବେଟ ମାରି କହୁଛି ସ୍ୱପ୍ନକୁମାର ଯଦି ତତେ ଆଉ ଥରେ ନାଚ ଦେଖିବାକୁ ଅନୁରୋଧ ନ କରନ୍ତି ତାହେଲେ ମତେ କହିବୁ—ଆଉ ଡେରି କରନି—ଆରମ୍ଭ କରିଦେ (ଭିତରକୁ ଚାଲି ଯାଇଁ ଯାଇଁ ଫେରି) କ୍ଷମା କରିବେ—ବଡ଼ା ଅଭି ଆୟୁଷ୍ମା (ପ୍ରସ୍ଥାନ) ଏକ ଅପୂର୍ବ ବାତାବରଣ ସୃଷ୍ଟି କରି ଗାଇବାକୁ ଆରମ୍ଭ କଲେ ସୁକଣ୍ଠୀ ଲିଲି ଦେବୀ—ନାଚଲେ କଲି ଓ ଅନ୍ୟ ଦୁଇଜଣ ବନ୍ଧୁ—ନାଚ ମଝିରେ ଗୋଟିଏ ଟ୍ରେରେ କଫି ନେଇ ଆସିଚି ଭାଲୁ-ସ୍ୱପ୍ନକୁମାର ଓ ପଶୁପତି ବାବୁ କଫିର ସଦ୍‌ବ୍ୟବହାର କରିବା

ସଙ୍ଗେ ସଙ୍ଗେ ନାଚ ମଧ୍ୟ ଉପଭୋଗ କରୁଥାନ୍ତି—ନାଚ ଶେଷରେ ସମସ୍ତେ କରତାଳ ଦେଲେ—)

(ଗୀତ)

ଓ······ଓ······

ଏଇ ପାହାଡ଼ର ତଳେ ରେ—ଏଇ ପାହାଡ଼ର ତଳେ
ଏଇ ଗୃଦ୍ଧମୀ ଖେଳେ ରେ—ଏଇ ଗୃଦ୍ଧମୀ ଖେଳେ—
ଆରେ ତୁ କାହିଁକି ଅଛୁଆଁ—
ଆମର ସାଥେ ନାଚନାଚ ଗା···
ମହକେ ମହୁଲ୍ ଫୁଲ୍‌ରେ ମହକେ କୋରେଇ ଫୁଲ୍
ଏଇ ପାହାଡ଼ର ତଳେ ରେ··· ।୧।

ଏ ଦୁନିଆ ଆଜ ରଙ୍ଗୀନ
କରନା ତାହାକୁ ସଙ୍ଗୀନ···
ଲୁଟିନେ ମଜା ଲୁଟିନେ···
ଏ ଲଗନ ଆଉ କେବେ ଆସିବନି···
ଯୌବନ ଥରେ ଗଲେ ଫେରିବନି···
ଲୁଟିନେ ମଜା ଲୁଟିନେ···
ଦୁଃଖେ ପତଙ୍ଗ ପୋଡ଼ିବାର ଲାଗି ଚଡ଼୍ ଚଡ଼୍ ଚଡ଼୍···
ଆଶାର ଦୀପ ଜଳେରେ··· ।୨।

ଆସିଛୁ ମୋ ପରାଣ ମିତ ଲୋ
ପରାଣ ଚମକେ ସତେ ଲୋ···
ବିତର କଥା ଭୁଲେ ଦୁଃଖର କଥା ଭୁଲେ
ଏଇ ପାହାଡ଼ର ତଳେ ରେ··· ।୩।

ଏ ଦୁନିଆ ଆଜି ଛନ୍ ଛନ୍
ଛନକା ଲାଗେ ଚନ୍ ଚନ୍ ଚନ୍
ଶୁଣିବେ ସୁର ଶୁଣିବେ...
ଏ ଗୋଲାପି ସାଜ ସୁର ପାଇବେନି ..
ଏ ଶାନ୍ତ ମଉଜ ଆଉ ରହିବନି...
ଶୁଣିବେ ସୁର ଶୁଣିବେ...
ଆନନ୍ଦ ଲାଗି ଦେଖ ଢଳ୍ ଢଳ୍ ଢଳ୍
ଗୋଲାପି ସୁର ଢାଳେ... (୪)

ମଶୁ—ସାବାସ୍ ସାବାସ୍ ଲିଲି ଦେବୀ—ଖାଲି ମଣିଷ କଣ ଯେ ଜୀବଜନ୍ତୁଙ୍କୁ ମଧ୍ୟ ମନ ମୁଗଧ କରି ରଖିବ ଆପଣଙ୍କର ଏ ନୃତ୍ୟ —(ସ୍ୱପ୍ନକୁମାନଙ୍କୁ ଲକ୍ଷ୍ୟକରି ) କ'ଣ ଆଜ୍ଞା ମୋ କଥା ବିଶ୍ୱାସ କଲେ ତ ? ରହିବାର୍ ସାଲ୍ ପରି ଦେଖି ମୁଁ ଉଠିପାରି ନ ଥିଲି—ହଉ ଲିଲି ଦେବୀ, ଆପଣମାନେ ଡାକ୍ତରବାବୁଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତୁ—ମୁଁ ତେଣେ ଅନ୍ୟାନ୍ୟ ବନ୍ଦୋବସ୍ତ କରେ— (ପ୍ରସ୍ଥାନ) (କିଛିକ୍ଷଣ ନୀରବତା ପରେ)

ଜଲି—ଲିଲି, ଆମର ମହାମାନ୍ୟ ଅତିଥି ତୋର ଏ ସମ୍ବର୍ଦ୍ଧନା କିପରି ଭାବରେ ଗ୍ରହଣ କଲେ କିଛି ଆଭାସ ପାଇଲୁ ?

ଲିଲି—ଏ ନାଚ ଯାହାକୁ ଭଲ ନ ଲାଗିବ, ମୁଁ ଯୋର କରି କହିବି ସେ କଳାର ମୂଲ୍ୟ ବୁଝେନା—

ସ୍ୱପ୍ନ—ମୁଁ ତ ପ୍ରଥମରୁ କ୍ଷମା ମାଗି ନେଇଛି—କଳାର ମୂଲ୍ୟ ମୁଁ କିଛି ବୁଝେନା—

ଜଲି—ବାହା ନହେଲେ ବି କ'ଣ କେବେ ବର୍ଯାତ୍ରୀରେ ଯାଇ ନାହାନ୍ତି ? ନିଜେ କଳାକାର ନ ହୋଇ ପାରନ୍ତି, ଅଉ ବି'ଧନ

ଗଲେ ତ କଳାକାରର ହାତ ଧରିବାକୁ ଯାଉଛନ୍ତି—ମୋର ବନ୍ଧୁର ଆୟୋଜନ ଆମେରିକା ଫେରନ୍ତା ଡ଼ାକ୍ତରଙ୍କ ଭାରାକ୍ରାନ୍ତ ମସ୍ତିଷ୍କକୁ ହାଲୁକା କରିବା ପାଇଁ ଖୋରାକ ଯୋଗାଇଚି ତ ?

ସ୍ୱପ୍ନ—ଅନୁକରଣ କରିବା ଭଲ ଯେ—ତେବେ ସବୁ କ୍ଷେତ୍ରରେ କଲେ ନିଜତ୍ୱ ଚାଲିଯାଏ । ମୁଁ ଯାହା ବୁଝେ—ନାଚ, ଗୀତ ଜାତିର ସଂସ୍କୃତି—ବୁଝି ପାରୁଚନ୍ତି ତ ?

ଜଲି—Yes Sir f r your information I do

ସ୍ୱପ୍ନ—ସଂସ୍କୃତି, ପରମ୍ପରାକୁ ବଞ୍ଚେଇ ରଖେ—କିନ୍ତୁ ଆପଣଙ୍କର ଏ ପ୍ରାଚ୍ୟ ପାଶ୍ଚାତ୍ୟର ସମିଶ୍ରଣରେ ଆପଣମାନେ ଆମର ସଂସ୍କୃତିକୁ କୁଠାରାଘାତ କରିଛନ୍ତି ।

ଜଲି—କାହିଁକି ? ଆମ ନାଚରେ ତ୍ରୁଟି କ'ଣ ଦେଖିଲେ କୁହନ୍ତୁ—ସମାଲୋଚନା ଉପରକୁ ଆସନ୍ତୁ ମିଷ୍ଟର— ଖାଲି ମୁହଁରେ କହି ଦେଲେ ଚଳିବନି ।

ଲିଲି—ପାଶ୍ଚାତ୍ୟ ଆଦବ କାଇଦାରେ ସ୍ୱର ସଂଯୋଜନା, ଭାରତୀୟ ନୃତ୍ୟ, ଉତ୍କଳୀୟ ବେଷଭୂଷା, ନୃତ୍ୟ ଜଗତରେ ଆମେ ଏକାବେଳେ ନୂତନ ପଦକ୍ଷେପ କରିଚୁ—

ସ୍ୱପ୍ନ—ଖୁବ ରଙ୍ଗିନ କରି ପାରିଚନ୍ତି, ସେଇଟା ମୁଁ ସ୍ୱୀକାର କରୁଚି—ତେବେ ପାଶ୍ଚାତ୍ୟ ଆଦବ କାଇଦା ସମ୍ପୂର୍ଣ୍ଣ ଆୟତ୍ତ କରି ପାରି ନାହାଁନ୍ତି—କିନ୍ତୁ ଯଦି ମନେ ନ କରନ୍ତି ସାଧାରଣ କଥାଟିଏ କହିବି—

ଲିଲି—ଥାଉ ଆଉ କହିବା ଦରକାର ନାହିଁ—ଦେଖିଲ ତ ଜଲି, ମନ ମାନିଲା ? ମାସେ କାଳ ଯୋଉଁ ପରିଶ୍ରମ କରିଥିଲୁ,

ପ୍ରଶଂସା ପତ୍ରଟା ପାଇଲେନି ? ଆଚ୍ଛା, ପଚାରିଲି୍ ଜଳି—ବିଶ୍ୱବିଦ୍ୟାଳୟର କୃତି ଛାତ୍ରଙ୍କୁ କ'ଣ ଗଠନ ମୂଳକ ସମାଲୋଚନା କରି ଆସେନା ?

ସ୍ୱପ୍ନ—ତୃତୀୟ ପୁରୁଷର ଆଶ୍ରୟ ନ ନେଇ, ମତେ ସିଧା ପଚାରୁ ନାହାନ୍ତି ? ମୁଁ ତ ଏଇ ଆପଣଙ୍କ ପାଖରେ ଅଛି—

ଜଳି—Oh! I see, ତୃତୀୟ ପୁରୁଷ ମଝିରେ ରହି ସ୍ୱପ୍ନକୁମାରଙ୍କୁ ଖୁବ୍ ଅସୁବିଧାରେ ପକାଉଚି ବୋଧହୁଏ—ହଉ—ଲିଲି—ଯାଇ ଆସି ଟାଟା-ଟା-ଟା—Wish you best of luck (ପ୍ରସ୍ଥାନ)

ଲିଲି—ଜଳି, ଜଳି ! ଆପଣ ଜଣେ ଖ୍ୟାତନାମା ଡାକ୍ତର ହୋଇ ପାରନ୍ତି—ହେଲେ ସାଧାରଣ ଜ୍ଞାନ ଆପଣଙ୍କୁ ଅର୍ଜନ କରିବାକୁ ପଡ଼ିବ—ଜଳିକୁ ମୁଁ ନିମନ୍ତ୍ରଣ କରି ଆଣିଥିଲି—ଆପଣଙ୍କର କି ଅଧିକାର ଅଛି, ତାକୁ ଅପମାନ ଦେବେ ?

ସ୍ୱପ୍ନ—ଦେଖନ୍ତୁ ମାମୁଲି କଥାବାର୍ତ୍ତାରେ ଯଦି ଆପଣଙ୍କ ବନ୍ଧୁ ଅପମାନ ପାଇ ଥାଆନ୍ତି, ତାହେଲେ ମୁଁ ଅବଶ୍ୟ ତାଙ୍କଠୁ କ୍ଷମା ମାଗି ନେବାକୁ ପ୍ରସ୍ତୁତ ଅଛି ।

ଲିଲି—ଆଉ ଦରକାର ପଡ଼ିବନି—ଗୋଟିଏ ମାତ୍ର ନମସ୍କାର କରିବାର ମାନେ କଣ ହୁଏ ନା—ଆପଣଙ୍କର ଜାଣିବା ଉଚିତ, ସମ୍ମାନ ଯାହାର ଅଛି, ଅପମାନ ତାଙ୍କୁଇ ବାଧେ

ସ୍ୱପ୍ନ—କିନ୍ତୁ ନିଜ ବିଷୟରେ ସବୁବେଳେ ଏତେଟା ସଚେତନ ରହିଲେ, ଅନ୍ୟ ସଙ୍ଗରେ ମିଶି ହୁଏନା—ମୁଁ ବୁଝିପାରୁନି ମୋ ପାଇଁ ଏ ବିରାଟ ଆୟୋଜନ କରିଗଲ କାହିଁକି ? ମୋର ଅଭିମତ ବା କିଅଛି କାହିଁ ? ଅଉ ମୁଁ ମୋର ନିଷ୍ଠୁ ମତ ଦେବାର୍…

ଲିଲି—ସମାଲୋଚକଟା ହୋଇ ପାରିବେନ—ଆପଣ ଜଣେ ନାଟ୍ୟକ ।

ସ୍ୱପ୍ନ—ଠିକ୍‌କଥା କହୁଛନ୍ତି—ରୋଗୀ ଦେଖି ଦେଖି ଆଖି ଯୋଡ଼ାକ ମୋର ଇମିତି ବ୍ୟସ୍ତ ହୋଇ ଯାଇଛି ଯେ ସମାଜ ଭିତରେ ରୋଗ ବ୍ୟାଧି ଦେଖିଲେ ସହ୍ୟ ହୁଏନା—ଯେଇଥି ଲାଗି ଆପଣ ଦୁଇବନ୍ଧୁଙ୍କର ପାଶ୍ଚାତ୍ୟ ସଭ୍ୟତା ଅନୁକରଣ ରୋଗରୁ ମୁକ୍ତିର ସନ୍ଧାନ ଦେଇଥିଲି—

ଲିଲି—ଖୁବ୍‌ ବାହାଦୁରୀ କଲେ । ସେ ଦିନ ସିମିତି ଆପଣଙ୍କ ଡ଼ାକ୍ତରଖାନା ଯାଇଥିଲି ଯେ, ଖାଲି ବଡ଼ ବଡ଼ କଥା ଶୁଣାଇଲେ—ଆପଣ ଝିଉସନ୍‌ ମାଷ୍ଟର, ଧର୍ମ ଯାଜକ ନା ଧର୍ମ ପ୍ରଚାରକ ?

ସ୍ୱପ୍ନ—ମୁଁ ଜଣେ ଡ଼ାକ୍ତର—ରୋଗୀକୁ ଆରୋଗ୍ୟ କରିବା ମୋର ଧର୍ମ—

ଲିଲି—ଆପଣଙ୍କ ଆଖିରେ ମୁଁ ତା ହେଲେ ଜଣେ ରୋଗୀ ?

ସ୍ୱପ୍ନ—ସଂଘାତିକ ଭାବରେ ଆପଣ ରୋଗାକ୍ରାନ୍ତ—ମନର ବିକାର ଘଟିଛି—ସେଇଥିଲାଗି ଆପଣଙ୍କର ଜଳବାୟୁ ପରିବର୍ତ୍ତନ ଏକାନ୍ତ ପ୍ରୟୋଜନ—ଆପଣଙ୍କ ବାବାଙ୍କୁ ମୁଁ ପରାମର୍ଶ ଦେଉଛି, ମାନସିକ ପରିବର୍ତ୍ତନ ପାଇଁ ସେ ଆପଣଙ୍କୁ ରାଞ୍ଚିରେ ପଠାଇବାର ଶୀଘ୍ର ବ୍ୟବସ୍ଥା କରନ୍ତୁ ।

କଳ୍ପ—(ପ୍ରବେଶ କରି ) ତୁମର ଏ ମୂଲ୍ୟବାନ ପରାମର୍ଶ ପାଇଁ ମୁଁ ତୁମକୁ ସମର୍ଥନ କରୁଛି ସ୍ୱପ୍ନକୁମାର—ଲିଲିର ରାଞ୍ଚି ଏକାନ୍ତ ଆବଶ୍ୟକ—କାରଣ ଅବଶ୍ୟ ମୁଁ କହୁନାହିଁ । ଆଶା କରୁଛି ତୁମେ ନିଶ୍ଚୟ ବୁଝି ପାରୁଥିବ ।

ଲିଲି—କାହିଁକି ବାବା ? ମୋର ଇମିତ କ'ଣ ହୋଇଛି ଯେ, ହଠାତ୍ ଜଳବାୟୁ ପରିବର୍ତ୍ତନର ପ୍ରଶ୍ନ ଉଠୁଚି ?

କଳ୍ପ—ଡାକ୍ତରୀ ଜ୍ଞାନର କୃତିତ୍ୱ ନେ, ଆମେରିକା ଫେରନ୍ତା ସ୍ୱପ୍ନ-କୁମାରଙ୍କର ରୋଗ ଚିହ୍ନିବାରେ କେବେ ଭୂଲ ହୋଇ ପାରେ ନା ମା—(ସ୍ୱପ୍ନ କୁମାରଙ୍କୁ ଲକ୍ଷ୍ୟକରି) ତେବେ ତୁମର ହିତାକାଂକ୍ଷୀ ଭାବରେ ମୁଁ ମଧ୍ୟ ପ୍ରସ୍ତାବ ଦଉଚି ଲିଲି ସଙ୍ଗରେ ତୁମେ ନଜେ ଯାଅ—

ସ୍ୱପ୍ନ—ଆପଣ କ'ଣ କହୁଚନ୍ତି ଆଜ୍ଞା ?

କଳ୍ପ—ଉଭୟଙ୍କର ଗୁରୁଜନ ଓ ହିତାକାଂକ୍ଷୀ ଭାବରେ ମୋର ଉପଦେଶ, ତୁମ ଦୁଇଜଣଙ୍କର ପରିବର୍ତ୍ତନ ଏକାନ୍ତ ଆବଶ୍ୟକ (ଲିଲି ଚାଲି ଯାଉଥିଲା) ତୋର ବ୍ୟସ୍ତ ହବାର କିଛି ନାହିଁ ଲିଲି ତୋର ସାଙ୍ଗମାନେସବୁ ବସି ଗଲେଣି--ତୁ ବସ୍--ହଁ, ହଁ ।

ଲିଲି—ନାଇଁ ବାବା ମୁଁ ଆସୁଚି—(ଚାଲିଗଲା)

କଳ୍ପ—ଦେଖ ସ୍ୱପ୍ନକୁମାର ! ତୁମକୁ ବହୁଦିନୁ ଗୋଟାଏ କଥା କହିବାର ସୁଯୋଗ ଖୋଜୁଥିଲି—ମୁଁ ଚାହେଁ ତୁମ ଦୁଇଜଣଙ୍କର ବିବାହ—ତା ପୁଣି ଖୁବ୍ ଶୀଘ୍ର—ଲିଲିର ମତ ମୁଁ ଜାଣି ସାରିଚି—ତୁମର ମତ କ'ଣ ସ୍ୱପ୍ନକୁମାର ?

ସ୍ୱପ୍ନ—ଦେଖନ୍ତୁ ସେ ବିଷୟରେ ମୁଁ ବର୍ତ୍ତମାନ ସୁଦ୍ଧା କିଛି ଭାବିନି ।

କଳ୍ପ—ତୁମର ଆଉ ଭାବିବା ଦରକାର କ'ଣ ସ୍ୱପ୍ନକୁମାର ? ତୁମ ଦୁଇଜଣଙ୍କର ଭବିଷ୍ୟତ ଗଢ଼ିବାର ଭାର ମୁଁ ଯଦି ନିଜ ହାତକୁ ନିଏ ? ଆମେରିକାରେ ତୁମେ ଥିଲା ବେଳେ ଗୋଟାଏ ଚିଠିରେ ମୁଁ ଠାର ସୂଚନା ଦେଇଥିଲି—ତୁମେ ବୁଝିଚ କି

ନା ତା ଅବଶ୍ୟ ଜାଣେନା-ମୁଁ କଲ୍ଟୁ ଲିଲି ପାଇଁ ତୁମକୁ ଲକ୍ଷ୍ୟରଖି ନିଶ୍ଚିନ୍ତ ହୋଇ ବସିଛି—ଆଜ ତୁମର ମତ ମୁଁ ଜାଣିବାକୁ ଚାହେଁ—

ସ୍ୱପ୍ନ—ଦେଖନ୍ତୁ, ବିବାହ କରିବା କଥାଟା ଏତେ ସହଜ ନୁହେଁ ଯେ ପାଞ୍ଚ ଦଶ ମିନଟ୍ ଭିତରେ ନିଷ୍ପତ୍ତି କରାଯାଇ ପାରିବ ।

କଲ୍ଟୁ—ଅବଶ୍ୟ ମୁଁ ତୁମ ସାଙ୍ଗରେ ଏକମତ—ହେଲେ ମୋର କନ୍ୟା ନେଇ କଥା ପଡ଼ିଛି ଯେତେବେଳେ, ତୁମର ଆଉ ଭାବିବାର କିଛି ନାହିଁ—ରୂପ, ଗୁଣ, ଶିକ୍ଷା, ଦୀକ୍ଷା ଏ ସବୁଥିରେ ତୁମେ ଲିଲିକୁ କେବେ ଅସ୍ୱୀକାର କରି ପାରିବନି ତା ଛଡ଼ା ଲିଲି ହଉଛି ମୋର ଏକମାତ୍ର କନ୍ୟା—ତେଣୁ ଲିଲିକୁ ବିବାହ କରି, ତୁମେ ଯେ ଭବିଷ୍ୟତ ପାଇଁ ଶକ୍ତ ମୂଳଦୁଆ ଦେଇ ପାରିବ—ଏକଥା ମୁଁ ଯୋର ଦେଇ କହିବି—

ସ୍ୱପ୍ନ—ଦେଖନ୍ତୁ ସେ ବିଷୟରେ ଆଲୋଚନା ଆଉ ଦିନେ କରିବା । ଆଜ ମୁଁ ପ୍ରସ୍ତୁତ ହୋଇ ଆସିନି । ମୋ ପାଇଁ ରୋଗୀମାନେ ଅପେକ୍ଷା କରିଥିବେ—

କଲ୍ଟୁ—ନାଁ । ନାଁ । ସ୍ୱପ୍ନକୁମାର—ମୁଁ ମଧ୍ୟ ତୁମକୁ ବହୁଦିନୁ ଅପେକ୍ଷା କରିଛି—ତୁମର ମନେଥିବ, (ଖାଲୁର ପ୍ରବେଶ, ସିଡ଼ି ଉପରେ ଥାଇ)

[illegible]—[illegible] ଘୋନ (ପ୍ରସ୍ଥାନ)

[illegible]—Ministerଙ୍କ ଘୋନ ଆସିଲା ବୋଧହୁଏ- [illegible] ! ([illegible] ମନ୍ତ୍ର ଲୁଚକାଇ ଶୁଣୁଥିଲେ- [illegible]) ଏକାକୀ [illegible]—ସ୍ୱପ୍ନକୁମାର !

ତୁମେ ଲିଲି ସାଙ୍ଗରେ ଉପରକୁ ଆସ—ମୁଁ ଦେଖୁଛି—
(ଚାଲିଗଲେ—କିଂକର୍ତ୍ତବ୍ୟ ବିମୂଢ଼ ହୋଇ ବସି ରହିଲେ ସ୍ୱପ୍ନକୁମାର—କିଛିକ୍ଷଣ ନୀରବତା ପରେ)

ଲିଲି—ମୁହଁ ଖୋଲି ସବୁକଥା ନ କହିଲେ ବି ଗତ ବର୍ଷରୁ ମଣିଷର ଉଦ୍ଦେଶ୍ୟ ଜଣାପଡ଼େ—କାହିଁକି ଆପଣ ପରୀକ୍ଷାର ମନା କରି ଦେଲେନି ? ସେ ସବୁ ସାହସ ବୋଧହୁଏ ଆପଣଙ୍କର ନାହିଁ ?

ସ୍ୱପ୍ନ—ଅନେକ ସମୟରେ ସବୁକଥା ମୁହଁ ଖୋଲି କୁହାଯାଇ ପାରେ ନା ଲିଲି ଦେବୀ !

ଲିଲି—ଆପଣ ଯଦି ଭାବୁଥାନ୍ତି ବାବାଙ୍କୁ ଜୋଇଁ ମିଳେବେନି ତେବେ ଦେଖିଯିବେ ଆସନ୍ତୁ ବାବାଙ୍କ ଆଲମିରାରେ କେତୋଟା Doctorate, କେତୋଟା M. A. P. H. Dଙ୍କର ଫଟୋ ଥୁଆ ହୋଇଛି—

ସ୍ୱପ୍ନ—Thanks, ଆଉ ଦିନେ ଆସିଲେ ଦେଖିବି—
(ଚାଲି ଯାଉଥିଲେ)

ଲିଲି—ଚାଲି ଯାଉଛନ୍ତି ଯେ ?

ସ୍ୱପ୍ନ—ସବୁଦିନେ ପାଇଁ ଯାଉନି—ଆହୁରି ପ୍ରାୟ ଅନେକ ଥର ଆସିବାକୁ ପଡ଼ିବ ।

ଲିଲି—ତାର ମାନେ ?

ସ୍ୱପ୍ନ—ବୁଝି ପାରୁନାହାନ୍ତି ? ମୁଁ ବି ଆପଣଙ୍କୁ ବୁଝେଇ ପାରୁନି ।

ଲିଲି—ବାବା ପରା ଆପଣଙ୍କୁ ଉପରକୁ ଯିବାକୁ ଡାକିଗଲେ ?

ସ୍ୱପ୍ନ—ତଳେ ମୋର ସମ୍ବର୍ଦ୍ଧନା ପାଇଁ ଯେଉଁ ଧରଣର ବ୍ୟବସ୍ଥା

ହୋଇଗଲି ସେଥିରେ ମୋର ଉପରକୁ ଯିବା ଦରକାର ନାହିଁ—ମୁଁ ଆସୁଚି, ନମସ୍କାର । ଆଉ ବାବାଙ୍କୁ ମୋର ନମସ୍କାର ଜଣେଇ ଦେବେ (ପ୍ରସ୍ଥାନ)

ଲିଲି—My Father !



## ୨ୟ ଦୃଶ୍ୟ

(ବଶୁଘର ଅଳନ୍ଦ—ଆଗେ ଆଗେ ଆସିଲେ ମୀନା ଓ ପଛରେ ବଶୁମା)

ମୀନା—ନା, ନା, ନା । କାହିଁକି ମିଛଟାରେ ମୋ ପଛରେ ଗୋଡେଇଚୁ କହିଲୁ ?

ବଶୁମା—ଆଲୋ ମୀନା ! ଝିଅ ଜନମ ପାଇ କାହିଁକି ଇମିତି ହଉଚୁ ଭଲି ? ଇମିତି ହେଲେ ବହି ଯେତେବେଳେ ଖରାପ ହବ, ମୁଁ କାହା ଗୋଡ଼ ଧରି କାନ୍ଦିବି କହିଲୁ ?

ମୀନା—ତତେ ଜମା କାନ୍ଦିବାକୁ ମୁଁ କହୁନି—ସିଧା ନେଇ ମଶାଣୀରେ ଶୋଇ ଦେଇ ଆସିବୁ ।

ବଶୁମା—କାହିଁକି ଏ ଅକଥା ଗୁଡ଼ା ମୁହରେ ଧରୁଚୁ କହିଲୁ ? ଆସି ଏଡ଼ୁଟିଏ ହେଲୁଣି, ଆଉ କେବେ ତୋର ଅକଲ ହବ ? ଘିଚି ପଖାଳ ତୋର କଣ ଦୋଷ କଲା ? ଅନ୍ନ ପରା ମା ଲକ୍ଷ୍ମୀ, ତାଙ୍କ ସାଥିରେ ବାଦ ସାଧି କେତେଦିନୁ ରହିବୁ ?

ମୀନା—ତତେ ପରା ଥରେ ମନା କଲି ଖାଇବନି ବୋଲି—କାହିଁକି ସିମିତି ହଉଚ ?

ବଶୁମା—ଆଲୋ ତୋର ପାଇଁ ଦି ଦିନ ହେଲା ମୋ ପେଟକୁ ବି ଦାନା ଯାଉନି—ଆ, ବଶୁ ଖୁସିରେ ମାଛ ଆଣିଚି—ଆସି ଯଦି ଶୁଣିବ ତୁ ଖାଉନୁ ତା ମନରେ ଦୁଃଖ ହବନି ? ମୋ ମାଆଟା ପରା ଆ ଖାଇବୁ ।

ମୀନା—ତୋ ବାପ ଜନମରୁ ତୁ ମାଛ ଖାଇ ନ ଥିବୁ ଯେ ଯା ଖାଇଦବୁ—

ବଶୁମା—ଦି ଦିନ ହେଲା ତୁ ତ ଖାଉନୁ—ମା ହୋଇ ମୋ ପେଟକୁ ଦାନା ଯିବ କିମିତି କହିଲୁ ? ଭୋକରେ ମୋ ପେଟ ଆଉଟ ପାଉଟ ହେଲଣି । ଆ, ମୀନା ଆ ।

ମୀନା—କାହିଁକି ମତେ ରଗଉଚୁ ?

ବଶୁମା—କଣ ହେଇଚି ତା ହେଲେ ମତେ କହୁନୁ ?

ମୀନା—କଣ ହେଇଚି ଶୁଣିବୁ ?

ବଶୁମା—ହଁ କହ, କଣ ହେଇଚି ?

ମୀନା—ଭାଇ ଯେ ଏତେ ଟଙ୍କା ଆଣି ତୋ ହାତରେ ଗୁଞ୍ଜି ଦଉଚନ୍ତି—କୋଉଠୁ ସେ ସବୁ ଆଣୁଛନ୍ତି ଥରେ ହେଲେ ତାଙ୍କୁ ପଚାରିଚୁ ?

ବଶୁମା—ଆଲୋ ତାର କେ.ଉ ସାଙ୍ଗ ପାଖରୁ ଧାର ଆଣିଥିଲା ପରା—

ମୀନା—ସବୁ ମିଛ କଥା—ଭାଇ ଚୋରି କରୁଛନ୍ତି ।

ବଶୁମା—ଏଁ ବଶୁ ଚୋରି କରୁଛି ? ତୁ କଣ କହୁଛୁ ମୀନା ?

ମୀନା—ଆଉ କଣ ମୁଁ ଭାଇଙ୍କ ନାଁରେ ମିଛ କହୁଛି ? କୋଉଠିତ ଚାକରି ପାଇଲେ ନାହିଁ—ଏତେ ଟଙ୍କା ଆଣିଲେ କୋଉଠୁ ? ଆମର ଦୁଃଖ କଷ୍ଟ ଦେଖି ଇମିତି କାହାର ଦରଦ ଉଚ୍ଛୁଳି

ଯାଉଛି ଯେ, ମୁଠା ମୁଠା ଟଙ୍କା ଖାଲି ତୋ ପୁଅ ହାତରେ ଧରେଇ ଦଉଚନ୍ତି ? ରାତି ହେଲେ ଭାଇ ଏଇ କେତେଦିନ ହେଲା କୁଆଡ଼େ ଯାଉଛନ୍ତି—ତାଙ୍କ ଢଙ୍ଗରଙ୍ଗ ଦେଖି କ'ଣ କିଛି ଠଉରେଇ ପାରୁନୁ ?

ବଶୁମା—ଆଲୋ କମିତି ଜାଣିବି କହ ? ତୋ ବାପତ ସ୍ୱାଭାବିକ ମଣିଷ ଥିଲେ···ମୁଁ ତ ମୋର ଦୁଃଖ ସୁଖ କରି ଖାଉଚି-ଆମ ବଂଶରେ କେହି ତ ସେମିତି ନୁହନ୍ତି—ତେବେ ବଶୁ ମୋର ସେ ନଉଛୁଣା କାମ କରିବ କାହିଁକି ? ହଉ ବଶୁ ଆଜ ଆସୁ, ମୁଁ ତାକୁ ପଚାରୁଚି—ତୁ ଆସିଲୁ କଣ ଗଣ୍ଡେ ଖାଇଦବୁ ।

ମୀନା—ନା, ନା, ମୁଁ ମୋଟେ ଖାଇବିନି—ଭାଇ ଚୋରା ଟଙ୍କାରେ ଆମକୁ ବଞ୍ଚେଇ ରଖିବେ ! ମରିଯିବି ପଛେ ମୁଁ ଏ ଘର ପାଣି ଛୁଇଁବିନି—

(ଏତିକିବେଳେ ବାହାରେ ମଟର ହର୍ଣ୍ଣ ଶୁଭିଲା—ମୀନା, ବଶୁମା—ଦାଣ୍ଡ ଦୁଆରକୁ ଲକ୍ଷ୍ୟ କଲେ । ଆସିଲେ ବଶୁ—ହାତରେ ଗୁଡ଼ାଏ ଟେଯୁଲେଟସ—ଗୋଟି ଗୋଟି କଣ ରଖିଲା ପରେ)

ମୀନା—ଏ ସବୁ କଣ ଭାଇ ?

ବଶୁ—ଟେଯୁଲେଟ୍ସ୍, ବର୍ଷକର ଖୋରାକ—(ବାହାରକୁ ଲକ୍ଷ୍ୟକରି) ଏ ଲଛମନା ! ତୁ ସେଥିରୁ ପାଞ୍ଚ ଟଙ୍କା ନେଇଯିବୁ—ଆଉ ଡ୍ରାଇଭରକୁ ଦଶଟଙ୍କା ଦେଇଦବୁ—ହଁ ଠିକ୍ ରାତି ନ'ଟା-ବେଳେ ଯିମିତି ଗାଡ଼ି ପହଞ୍ଚେ—(ମୀନାକୁ) ଆରେ, ମୀନା ! ମୁଁ ତୁମମାନଙ୍କୁ ହଜାର ଥର କହିଲିଣି ସେଇ ବାଜେ ଲୁଗା ଗୁଡ଼ାକ ପିନ୍ଧିବୁନି ବୋଲି—ଏତେ ଫେନସ୍ ଡ୍ରେସ୍ ଆଣିଲେ

ବ ତୁମେ ପୁଣି ସେମୁଡ଼ା ପିନ୍ଧୁଛ ? ହଁ, ବୋଉ ତୋର ଆଉ କଣ କଣ ଜିନଷ ଆସିବାର ଥିଲା ପର ? ନେ, ଏ ପାଞ୍ଚଶହ ଟଙ୍କା ରଖିଥା—ଏକାଥରେ ସବୁ କିଣି ନେଇ ଆସିବୁ—

ବଶୁମା—ଏତେ ଟଙ୍କା ତୁ କେଉଠ ପାଇଲୁ ବଶୁ ?

ବଶୁ—ଆରେ ଟଙ୍କାରେ ମୁଁ ଯଦ ତୁମମାନଙ୍କୁ ପୋତ ନ ଦେଇଛି ତା ହେଲେ କହବୁ—ହଁ ମୀନା, ଦେଖିଲୁ ଏ ହାରଟା ପସନ୍ଦ ହଉଚ କ ନାଇଁ—ମଣିପୁର ପେଟାର୍ଣ୍ଣ, ନେ—

ମୀନା—ମୁଁ ସେ ଜିନଷ ଛୁଇଁବନ ଭାଇ ।

ବଶୁ—(ଚମକ) ମୀନା !

ବଶୁମା—ହଇରେ ବଶୁ, ତତେ ମୁଁ ଆଜି ଗୋଟାଏ କଥା ପଚାରବ ସତ କହବୁ ।

ବଶୁ—ମୋର ଏଇଲଗେ ଝୁଷଣ କାମ—ନଶ୍ୱାସ ମାରବାକୁ ସମୟ ନାହିଁ—ମୋର ଜଣେ ସାଙ୍ଗ ବାହାରେ ଅପେକ୍ଷା କରଚ—ମୁଁ ଆସେ ।

ମୀନା—ନା ଭାଇ ତୁମେ ଯାଇ ପାରବନ—ଆଗ ବୋଉ କଥାର ଜବାବ ଦଅ ।

ବଶୁମା—ମୋ ଦଦ ଛୁଇଁ କହଲୁ ବଶୁ, ଏତେଟଙ୍କା ଏତେ ଜିନଷ ତୁ ଆଣୁଚୁ କୋଉଠୁ ?

ବଶୁ—କହଥିଲି ପରା—ମୋର ଜଣେ ସାଙ୍ଗ ଦବର୍ଷ ତଳେ ହଜାରେ ଟଙ୍କା ଧାର ନେଇଥିଲା—ସେଇଆକୁ ଶୁଝୁଚ ।

ବଶୁମା—ଆଉ ଆଗରୁ ଯୋଉ ଏତେ ଜିନଷ ଆଣିଥିଲୁ ?

ବଶୁ—ତୋର ଏତେ ସବୁ ବୁଝିବା କ'ଣ ଦରକାର ଯେ ?

ମୀନା—ଇମିତି କଏ ସବୁ ତୁମର ସାଂଗ ଅଛନ୍ତି ଯେ, ଖାଲି ପୁଳା ପୁଳା ଟଙ୍କା ତୁମକୁ ଦେଇ ଦଉଚନ୍ତି ? ଗୃହଲକ୍ଷ୍ମୀ ମୁକାବିଲା କରିବା । ମୁଁ ତୁମ ସାଙ୍ଗରେ ଯିବି ।

ବଶୁମା—ହଁ, ମୁଁ ବି ତୋ ସାଙ୍ଗରେ ଯିବି ବଶୁ—ଦେଖିବି କଏ କାହାଁକି ଉଠେ ଏତେ ଟଙ୍କା ଦଉଚି—

ମୀନା—ଏ ସୁନା ହାରଟା ବି କଣ ତୁମ ସାଙ୍ଗମାନେ ଦେଇଚନ୍ତି ?

ବଶୁମା—ବଶୁରେ ! ତୋ ବାପର ଧନେ ନା ବାଜୁଥିଲି—ତାଙ୍କର ପୁଅ ହୋଇ ଶେଷରେ ତୁ ଏଇ କାମ କଲୁ ?

ବଶୁ—ତୁ କ'ଣ କହୁଚୁ ବୋଉ ?

ମୀନା—ବୋଉ କଣ କହିବ—ମୁଁ କହୁଚି ଶୁଣ—ତୁମେ ଆଜିକାଲି ଚୋରି କରୁଚ—

ବଶୁ--ମୀନା !

ମୀନା—ହଁ ଶହେ ଥର କହିବି, ହଜାର ଥର କହିବି, ଚୋର—ଚୋର—ଚୋର—

ବଶୁ—(ରାଗି) ମୀନା !

ମୀନା—ବଡ ହୋଇ ଆମକୁ ସବୁ ମଣିଷ କରିବ କ'ଣ ତୁମେ ନିଜେ ଚୋରି କରୁଚ ? ଲାଜ ମାଡୁନି ତୁମକୁ ? କାହିଁକି ? ଗୃହଟା ପେଟ ଯଦି ପୋଷି ପାରୁନା, କୁଲିଗିରି କରୁନା ? ରିକ୍ସା ଟାଣୁନା ? ତା ନ ହେଲେ ବାଟରେ ଯାଇ ଭିକ ମାଗୁନା ?

ବଶୁ—ଚୁପକର ମୀନା ! ଆସ୍ତେ ଆସ୍ତେ ତୁ ଭାରି ବଡ଼ି ବଢି କଥା କହି ଶିଖିଲୁଣି ?

ମୀନା—କାହିଁକି କହୁଚନ ? ତୁମେ ଚେଷ୍ଟା କରିବ—ମଣିଷ ହୋଇ ମଣିଷର ଗଳା କାଟିବ—ମୁଁ କହୁଚନ ? ତୁମେ ପଶୁ ପାଲଟି ଯାଇଚ—ଶଇତାନ ହୋଇ ଯାଇଚ—

ବଶୁ—ଖବରଦାର କହୁଚି ମୀନା ! ହଁ ମୁଁ ଚେଷ୍ଟା କରୁଚି ·· ଡକାୟତି କରୁଚି—ଖୁନ୍ କରୁଚି—ତୋର କ'ଣ ଗଲା ? ତୁ ଖାଇବୁ ପିଇବୁ, ସୁଖରେ ରହିବୁ—ତୋର କ'ଣ ଅଛି ?

ବଶୁମା—କଣ କହିଲୁ ବଶୁ ? ତାର କଣ ଅଛି ? ତୋର ମୁଣ୍ଡ କ'ଣ ଖରାପ ହୋଇ ଗଲାଣି -- ତୁ କଣ ପଶୁ ପାଲଟି ଗଲୁଣି ?

ବଶୁ—ହଁ, ହଁ ମୁଁ ପଶୁ ପାଲଟି ଗଲିଣି—ତୁମମାନଙ୍କର କାହାରି କଥା କହିବା ଦରକାର ନାହିଁ—ମଣିଷ ହୋଇ ମଣିଷପରି ଚଳିବାର ଦାବୀ ଯଦି ଏ ସମାଜ ଭିତରେ ନାହିଁ—ତା ହେଲେ ମୁଁ ଚେଷ୍ଟା କଲେ କ୍ଷତି କଣ ?

ମୀନା—କାହିଁକି ? ଗତର ଖଟେଇ ତୁମେ ଯଦି ରୋଜଗାର କରି ପାରୁନା--ଥିର ହୋଇ ଘରେ ବସ ମୁଁ ଗୁଳକଷି କରି ଟଙ୍କା ଆଣି ତୁମ ସମସ୍ତଙ୍କୁ ପୋଷିବି—

ବଶୁମା—ତୁ ଆଗ ଏ ଟଙ୍କା ଧରିଲୁ ବଶୁ, ନେଇ ଯା ସେ ହାର ଆଉ ତୁ ବି ବାହାରି ଯା ମୋ ଘରୁ—ଇମିତି ପୁଅ ମୋର ଦରକାର ନାହିଁ—ଆଜିଠୁ ମନେ ରଖ ତୋର ମା', ଭାଇ, ଭଉଣୀ କେହି ନାହିଁ ।

ମୀନା—ଥରେ ଜେଲ ଯାଇ ଇମିତି ଗୁଣ ହାସଲ କରି ଆସିଲ ଭାଇ ? ତୁମର ମାନ ସମ୍ମାନ କ'ଣ ସବୁ ପୋଡ଼ି ଖାଇ ସାରିଲଣି ?

ବଶୁମା—ବଶୁରେ ! ମୋର ଏ ଆଖି ଦି' ଟା ତୁ ଫୁଟେଇ ଦେ—

ମତେ ଜୀବନରୁ ଭୁ ମାରଦେ-ମୁଁ ଏସବୁ ଦେଖି ପାରିବିନରେ ବଶୁ—ମୁଁ ଏସବୁ ଦେଖି ପାରିବିନି—

ମୀନା—ଦୁନିଆକୁ ତୁମେ ସବୁବେଳେ ଫାଙ୍କି ଦେଇ ପାରିବନି ଭାଇ ! ହେନେ ନା ହେନେ ଆମକୁ ଯାଇ ଦାନ୍ତରେ ଛୁଡ଼ା ହବାକୁ ପଡ଼ିବ—ତା ପୂର୍ବରୁ ଆମର ତଣ୍ଟିଚିପି ମାରି ଦଉନା କାହିଁକି ?

ବଶୁମା—ଥାଉଲେ ମୀନା ଥାଉ—ଟୋଇଟା ପଶୁ ପାଲଟି ଯାଇଚି ସେଇଟା ଆଉ ମଣିଷ ହେଇ ନାହିଁ—ଚାଲ ଆମେ ତା ପାଖରୁ ଚାଲିଯିବା—ଭଗବାନ ଜନ୍ମ ଦେଇଛନ୍ତି ଯେତେବେଳେ, ଖାଇବାକୁ ସେ ନିଶ୍ଚୟ ଦେବେ ।

ମୀନା—କାହିଁକି ବୋଉ ! ମୁଁ କଣ ଅକର୍ମଣ୍ୟ ହେଇଚି କି ? ମୁଁ ତତେ ପୋଷିବି, ମୁଁ ବାବୁଆକୁ ପ.ଠ ପଢ଼ାଇବି—ମୁଁ ବାବୁଆକୁ ମଣିଷ କରିବି ! ଚାଲ, ବୋଉ ଚାଲ । (ଘର ଭିତରକୁ ଚାଲିଗଲେ—ବଶୁ ସେମାନଙ୍କ ଯିବା ବାଟକୁ ଚାହିଁ ସ୍ଥାଣୁଭଳି ଛିଡ଼ାହୋଇ ରହିଲା—ସେ ଭାବିଲା ସତେ ଯିମିତି ଭୁଲ କରୁଚି—ଅସ୍ପଷ୍ଟ ସ୍ୱରରେ ତା ପାଟିରୁ 'ବାହାରି ପଡିଲା—"ବୋଉ"—ଠିକ ଏତିକି ବେଳେ ଭିତରୁ ଅଟ୍ଟହାସ୍ୟ ଶୁଭିଲା ଦାଗୀର)

ଦାଗୀ—(ଭିତରୁ ହାଃ ହାଃ ହାଃ—ଭୋକିଲା ପେଟ—ଆଦର୍ଶ ହାଃ-ହାଃ-ହାଃ—

(ବଶୁର ଚେତନା ଆସିଲା—ଦାଗୀର ଉପଦେଶ ମନେ ପଡ଼ିଗଲା—ସେ ଘରି ଘରି ପାଦ ପକାଇ ବାହାରି ଚାଲିଗଲା ଘରୁ—)

## ପଞ୍ଚମ ଦୃଶ୍ୟ

(ସ୍ୱପ୍ନକୁମାରଙ୍କର ଡାକ୍ତରଖାନା—ରୋଗୀ ପରୀକ୍ଷା କରିବାର କେତେକ ସାଧାରଣ ସରଞ୍ଜାମ—ଗୋଟାଏ ବୋର୍ଡରେ ମଣିଷାକୃତି ଗୋଟାଏ ଛବି—କୋଠରୀଟିର ଗୋଟାଏ ପାଖରେ ପାର୍ଟିସନ ବୋର୍ଡ—ଗୋଟାଏ କୋଣରେ ଟୁଲ୍ ଉପରେ ବେସିନରେ ପାଣି ଓ ପାଖରେ ଟଓ୍ୱାଲ ଓ ସାବୁନ । ଗୋଟାଏ ବେଞ୍ଚରେ ଦୁଇଜଣ ରୋଗୀ ଡାକ୍ତର ବାବୁଙ୍କ ଅପେକ୍ଷାରେ ରହିଛନ୍ତି—ଅନ୍ୟ ପଟରେ ଶଙ୍କର୍ଷଣ ଟେବୁଲ ପାଖରେ କାର୍ଯ୍ୟବ୍ୟସ୍ତ—)

୧ ମ—ବାବୁ ! ବାବୁ !

ଶଙ୍କର—(କାମ କରୁ କରୁ) ଖାଲି ଗୋଟେ ମିନଟ୍—

୧ମ—କଣ ଆଜ୍ଞା କେତେ ଘଣ୍ଟା ଗଲାଣି ଡାକ୍ତର ବାବୁଙ୍କର ଦେଖାନାହିଁ—

ଶଙ୍କର—ବାବୁ ମୁଁ କଣ ଔଷଧ ଦେବ ? ମୃତ୍ୟୁକୁ ଯେବେ ଭୟ-ନାହିଁ କୁହ ଦେବି—

୨ୟ—ପେଟକୁ ଭୀଷଣ ମାରୁଚି ଆଜ୍ଞା—

ଶଙ୍କର—ତମେ ତାକୁ ମାର ।

୧ମ—(କାନ୍ଦ ୨ ହୋଇ) ଆଜ୍ଞା ମୋ ଭାର୍ଯ୍ୟା ଭୀଷଣ କଷ୍ଟ ପାଉଥିବେ—

ଶଙ୍କର—(ଚମକି)—ଏ ହେ ହେ—ଭାର୍ଯ୍ୟାଙ୍କ ଯାତନା ପାଇଁ ତୁମେ—କାନ୍ଦିଲଣି ? (ଲୋକଟି ଆହୁରି କାନ୍ଦିବାର ଦେଖି—ଆଃ—ବନ୍ଦକର ଗୋଟେ ମିନଟ୍ ପାଇଁ ଅପେକ୍ଷାକର ବାବା-ଡାକ୍ତରବାବୁ ଆସିଗଲେ ମାନେ ମୁଁ ତୁମ ରୋଗାକ୍ରାନ୍ତ ଭାର୍ଯ୍ୟାଙ୍କ ସପକ୍ଷରେ ସୁପାରିଶ୍ କରିବି—)

୧ମ—ଆଜି ଘରକୁ ଗଲେ ମୋତେ କ'ଣ ନିସ୍ତାର ମିଳିବ—
ମୋ ଅଠାବନ ପୁରୁଷର ପିଣ୍ଡ ବନ୍ଦ ହୋଇଯିବ ଆଜ୍ଞା—

ଶଙ୍କର—କଣ ହେଲା ? ତୁମେ ତାହେଲେ ତମ ଭାର୍ଯ୍ୟାଙ୍କ ଯାତନା ପାଇଁ କାନ୍ଦୁନ—କାନ୍ଦୁଛ ଭାର୍ଯ୍ୟାଙ୍କ ନିର୍ଯ୍ୟାତନା ପାଇଁ ? ସାବାସ—ସାବାସ—ସବୁ ସ୍ୱାମୀ ତୁମ ଭଳି ହେଲେ, ହବୁ ଭାର୍ଯ୍ୟା 'ଅଗଷ୍ଟ ପନ୍ଦର' ଭଳି ଜରୁର ଶୋଭାଯାତ୍ରା ବାହାର କରି ଖାଲି round କରିବେ ।

୨ୟ —ଆଉ ସହ୍ୟ କରି ପାରୁନି ଆଜ୍ଞା—ବଡ଼ କଷ୍ଟ—ଓ—ହୋଃ !

ଶଙ୍କର—ଓଃ ! କି ଜଞ୍ଜାଳରେ ପଡିଲି ମଣିଷ, ଗୋଟେ ମିନଟ ନିଶ୍ୱାସ-ପ୍ରଶ୍ୱାସ ବନ୍ଦ କରି ବସ ।

୨ୟ —ମରିଯିବି ଆଜ୍ଞା ।

ଶଙ୍କର—ଧୈର୍ଯ୍ୟ ଯଦି ନାହିଁ—ମଣିଷ ଜନ୍ମ ନେଲ କାହିଁକି ?

୧ମ —ଆଜ୍ଞା ଆପଣ କମ୍ପାଉଣ୍ଡର ବାବୁ ନା ?

ଶଙ୍କର—ଠାକୁରଙ୍କ ନିୟମ ପକାଇ କହୁଛି—ମୁଁ କମ୍ପାଉଣ୍ଡର ନୁହେଁ—ନୂଆ ନିଯୁକ୍ତି ପାଇଛି—ଖାଲି ପାଣି ବୋତଲଟା ଛଡ଼ା ଆଉ କିଛି ଚହ୍ନିନି—ଆପଣମାନଙ୍କୁ ମୋର ସବିନୟ ଅନୁରୋଧ—ଆପଣମାନେ ଧୀର ସ୍ଥିର ହୋଇ ଆଉ ଗୋଟେ ମିନଟ ପାଇଁ ବସନ୍ତୁ ।

୧ମ —ଆଜ୍ଞା ! ଡ଼ାକ୍ତର ବାବୁ ଘରକୁ ଗଲେ କେତେ ନାଇନ୍ତି ?

ଶଙ୍କର—କି ମୁସ୍କିଲ—ସ୍ଥାନ, କାଳ ପାତ୍ର ନେଇ ଯେଉଁଠା ବିବେଚନା କରାଯାଏ ।

୧ମ —ଆଜ୍ଞା, ମୋର ହୋଇ ଟିକିଏ ଡ଼ାକ୍ତର ବାବୁଙ୍କୁ କହିବେ—ଦୁଇମାସ ହେଲା ରୋଜଗାର ପତ୍ର ନାହିଁ—ଆପଣଙ୍କୁ ପଛେ ପାନଖିଆ କିଛି ଦେବି ।

ଶଙ୍କର—ଗୋଟିଏ ମିନିଟ Please, କଣ କହିଲ ? କିଛି ଦବ ? ଭଗବାନ ! କି ଅପାର ମହିମା ତୁମର—ଗୃହଆଡ଼େ କାଳା ପେଟେଇର ବ୍ୟବସ୍ଥା କରି ଦେଇଛ ।

୧ମ —କଣ ଆଜ୍ଞା କହିବେ ନା ?

ଶଙ୍କର—ତୁମକୁ ହାତ ଯୋଡ଼ୁଛି—ଗୋଟେ ମିନିଟ ପାଇଁ ଅପେକ୍ଷା କର— ( ପୁଣି କାମରେ ଲାଗିଲେ—ଭିତରକୁ ଆସିଲା ଭୁଲୁ )

ଭୁଲୁ —ଆଜ୍ଞା ଜୁହାର—

ଶଙ୍କର—ଗୋଟେ ମିନିଟ—

ଭୁଲୁ —ଶୁଣନ୍ତୁ ନା ମିନିଟ ବାବୁ ।

ଶଙ୍କର—କଣ ବୋଲି ଡାକିଲ ଭୁଲୁ ?

ଭୁଲୁ —ଆଜ୍ଞା ଶରଧାରେ ଆପଣଙ୍କ ନା ମିନିଟ ବାବୁ ଦେଇଛନ୍ତି

ଶଙ୍କର—ଖୁବ ବାହାଦୁରୀ କଲନ୍ତି, ମୋ ବାପା ମାଙ୍କର ଦିଆ ନାଁଟା ଉଡ଼ିଯିବ ତା ହେଲେ ?

ଭୁଲୁ —ମୋ ଦୋଷ କହିଲେ ଆଜ୍ଞା, ମୁଁ କୋଉଠୁ ଆସିଛି ?

ଶଙ୍କର—ନବଗଡ଼ ଜଙ୍ଗଲରୁ ।

ଭୁଲୁ —ନାଇଁ ଆଜ୍ଞା କହି ପାରିଲେନି । ଆଜ୍ଞା, ଦେଖ ମତେ ପଠେଇଚନ୍ତି ତାଙ୍କ ବଲଡ଼ି ବର ପାଖକୁ ।

ଶଙ୍କର—ଗୋଟେ ମିନିଟ ଅପେକ୍ଷା କର । ଡାକ୍ତରବାବୁ ରୋଗୀ ଦେଖି ଯାଇଛନ୍ତି ।

ଭୁଲୁ —ଆଜ୍ଞା, ଦେଶଙ୍କର ଚିଠି ନେଇ ଆସିଛି, କି ଚିଠି ବୁଝିଲେ ନା ଆଜ୍ଞା ?

ଶଙ୍କର—ମୁଁ ଛାପ୍ତ ବଦ୍ମାସ ଭୁଲୁ ! ସବୁ ବୁଝିଲି । ଗୋଟେ ମିନିଟ ଅପେକ୍ଷା କର—

ଘଲୁ—ଆଜ୍ଞା, ଚିଠିଟା ହିକଏ ପଢ଼ିବେ—ଦେଙ୍କ ଲେଖିଲା ବେଳେ ଖାଲି ହସି ହସି ଗଡି ଯାଉଥାନ୍ତି—

ଶଙ୍କର—ବନ୍ଦକର ଘଲୁ । ଆଦିରସ ଗୁଡ଼ା ମୋ ଦେହରେ ଯାଏ ନା ।

ଘଲୁ—ମୋ ମୁଣ୍ଡ ଖାଇବେ ଅଜ୍ଞା, ଆପଣ କାହାକୁ କହୁ ଜହିବେନା ! ତା ନ ହେଲେ ଦେଙ୍କ ମୋ ଉପରେ ଚିଡିବେ—ଆପଣ ଏ ଚିଠିଟା ରଖିଥାନ୍ତୁ—ଡ଼ାକ୍ତରବାବୁ ଆସିଲେ ଦେଇ ଦେବେ ।

ଶଙ୍କର—କ ? ଚୁକଘଟା ମୋତେ କଣ ପିତା ଲଗୁଛୁ ? ଗୋଟେ ମିନିଟ—(ଡ଼ାକ୍ତରବାବୁ ଆସିଗଲେ—ମୋ ପାଖରୁ ଯାଅ ନିଜ କାମରେ ବସିଲେ—ଭିତରକୁ ଆସିଲେ ସ୍ୱପ୍ନ କୁମାର )

ସ୍ୱପ୍ନ—ଶଙ୍କର୍ଷଣ ବାବୁ !

ଶଙ୍କର—ସାର !

ସ୍ୱପ୍ନ—ମାଇକ୍ରୋସ୍କୋପ୍ ଆଉ ଔଷଧ ଗୁଡ଼ା ଆସିଛୁ—ଆପଣ R/R ନେଇ ଷ୍ଟେସନ ଯାʼନ୍ତୁ—

ଶଙ୍କର—ସାର୍, ଗୋଟେ ମିନିଟ—ତା ହେଲେ ଯାଉଛୁ ସାର୍—
(କାଗଜ ପତ୍ର ସଜାଡ଼ି ଚାଲିଗଲେ ଘଲୁ ଆଗକୁ ଆସି ଜୁହାର ହେଲା ଓ ଚିଠିଟା ବଢ଼ାଇ ଦେଲେ )

ସ୍ୱପ୍ନ—କଏ ? ଓ ତୁମ ଦେଈ ଦେଇଛନ୍ତି ? ଦିନ ରାତି ତମ ଦେଈଙ୍କର କଣ ଆଉ କିଛୁ କାମ ନାହିଁ ?

ଘଲୁ—ଆଉ କାମ କଣ ଆଜ୍ଞା । ଖାଲି ଲେଖୁଛନ୍ତି, ହସୁଛନ୍ତି—ଚିଠୁଛନ୍ତି—

ସ୍ୱପ୍ନ—ହଉ, ତୁମେ ଯାଅ—

ଭୃତ୍ୟ—ନାଇଁ ଆଜ୍ଞା ଆପଣ କିଛି ଉତ୍ତର ଦେଉ ନାହାନ୍ତି ବୋଲି- ଦେଖି ମୋ ଉପରେ ରାଗୁଛନ୍ତି—

ସ୍ୱପ୍ନ—ନାଇଁ ମୁଁ ଆଜି ଉତ୍ତର ଦେଉଛି—ତୁମେ ଆଗ ମୋ ସାମନାରୁ ଗଲ—

ଭୃତ୍ୟ—ଆଜ୍ଞା ଏଣେ ଆପଣ ରାଗୁଛନ୍ତି—ତେଣେ ଦେଖନ୍ତୁ ଖାଲି ଶତ୍ରୁଙ୍କ ମାଇଲା ଭଳି ହଉଛନ୍ତି ।

ସ୍ୱପ୍ନ—ହଉ, ଯା ଯା ।

ଭୃତ୍ୟ—ମୋ ରାଣ କହିଲେ ଆଜ୍ଞା ଶଠି ହେବେଟି ( ସ୍ୱପ୍ନ କୁମାର ରାଗରେ ଗୁହାଁଳେ—ଭୃତ୍ୟ ଚାଲିଗଲା । )

ଦୂତ—ମରିଗଲି ଆଜ୍ଞା—କାଲି ରାତିଠୁଁ ମୋ ପେଟକୁ ମାରୁଛି—ଜଳେ, ଥଳେ, ପାତାଳେ କୋଉଠି ଥୟ ଦଉନି—

ସ୍ୱପ୍ନ—କଣ ଖାଇଥିଲ ?

ଦୂତ—ଆଉ ଖାଇଲି କଣ ଆଜ୍ଞା-ପୁଅ କାଲି ଘରକୁ ଭାକୁର ମାଛ ଆଣିଥିଲା ଯେ, ଦି'ଟା ମୁଣ୍ଡ ଲୋଭରେ ଖାଇଦେଲି—

ସ୍ୱପ୍ନ—ତା ପରେ ପରେ ପେଟକୁ ଧରି ବସି ଯାଇଛ—ହଉ ଦଉଛି—ଅପେକ୍ଷା କର ।

୧ମ—ଆଜ୍ଞା ଆଜି କହିଥିଲେ ପରା ମୋ ଭାର୍ଯ୍ୟାକୁ ଦେଖି ଯିବେ—

ସ୍ୱପ୍ନ—ଓ ହୋ—ତୁମେ ତ ହେଲ ସେଇ ଯୋଗ୍ୟ ସ୍ୱାମୀ ? ଯାଅ, ଯାଅ ତୁମ ଭାର୍ଯ୍ୟାକୁ ଦେଖି ମୁଁ ଘରେ ଔଷଧ ଲେଖି ଦେଇ ଆସିଛି—ଶିଶି ଆଉ ସେ ଲେଖାଟା ନେଇ ଆସିବ ଯାଅ—ଏଇଠୁ ଔଷଧ ନେଇଯିବ ।

୧ମ—ହଉ ଆଜ୍ଞା । ( ଜୁହାର କରି ଚାଲିଗଲା—ସ୍ୱପ୍ନକୁମାର ଲେଖିବାକୁ ବସିଲେ ଓ ଦୂତ ପ୍ରତି )

ସ୍ୱପ୍ନ—ଶିଶି ଆଣିଛ ?

୨ୟ—ଆଜ୍ଞା ।

ସ୍ୱପ୍ନ—ଡ଼ାକ୍ତର ଖାନାକୁ ଯାଅ—ଏଇଠାକୁ ଦେଖାଇ କମ୍ପାଉଣ୍ଡର ବାବୁଙ୍କ ଠାରୁ ଔଷଧ ନେଇଯିବ । (ଚାଲିଗଲେ-ସ୍ୱପ୍ନକୁମାର ଭୋଲୁ ଦେଇଥିବା ଚିଠିଟି ପଢ଼ି ମନେ ମନେ ବିରକ୍ତ ହୋଇ ଚିଠିଟି ଟେବୁଲର ଉପରେ ଫୋପାଡ଼ି ଦେଇ ମନକୁ ମନ କହିଲେ —(Nonsense )

ମୀନା—( ଆସି ଯାଇଥିଲେ ମୀନା—ଶାନ୍ତ, ଧୀର, ସ୍ଥିର—ଟିକିଏ ଅପ୍ରତିଭ ହୋଇ ) ଅନୁମତି ନ ନେଇ ଚାଲି ଆସିଛି-କ୍ଷମା ଦେବେ—

ସ୍ୱପ୍ନ—ଆଶ୍ଚର୍ଯ୍ୟ ଆପଣ !

ମୀନା—ମୋତେ ଚିହ୍ନିବେନି ଅଜ୍ଞା—ମୁଁ କିନ୍ତୁ ଆପଣଙ୍କର ଢେର ସୁଖ୍ୟାତି ଶୁଣି ଆସିଛି—

ସ୍ୱପ୍ନ—କଣ କେହି ଅସୁସ୍ଥ ?

ମୀନା—ନା, ଆପଣଙ୍କ ପାଖକୁ ଗୋଟେ ଚାକିରି ପାଇଁ ଆସିଛି ।

ସ୍ୱପ୍ନ—(ଆଶ୍ଚର୍ଯ୍ୟ ହୋଇ ) ଚାକିରି ! !

ମୀନା—ମୋର ମା, ଭାଇଙ୍କୁ ବଞ୍ଚାଇବା ଦାୟିତ୍ୱ ମୋର—ଆପଣ ଯଦି ପାରନ୍ତି ଦୟାକରି ମୋତେ ଗୋଟାଏ ଚାକିରି ଦିଅନ୍ତୁ ।

ସ୍ୱପ୍ନ—କିନ୍ତୁ ଆପଣଙ୍କୁ ଦେବାଭଳି ଚାକିରି ମୋ ପାଖରେ କାହିଁ ?

ମୀନା—ଆପଣ ଜଣେ ଡ଼ାକ୍ତର—ଏଣୁ ମୁଁ ଆପଣଙ୍କ ରୋଗୀ ମାନଙ୍କର ସେବା କରିବା ପାଇଁ ଚାହେଁ ।

ସ୍ୱପ୍ନ—କିନ୍ତୁ ରୋଗୀ ରଖି ଚିକିତ୍ସା କରିବାର ବ୍ୟବସ୍ଥା ମୋର ଏଠି କାହିଁ ? ନର୍ସ ହେବା ପାଇଁ ଇଚ୍ଛା ଥିଲେ ସରକାରୀ ଡ଼ାକ୍ତରଖାନା ଗଲେନି ? ନର୍ସିଂ ପାଶ କରିଛନ୍ତି ତ ?

ମୀନା—ସେ ଯୋଗ୍ୟତା ନାହିଁ ବୋଲି ଆପଣଙ୍କ ପାଖକୁ ଆସିଛି ।

ସ୍ୱପ୍ନ—ଦେଖନ୍ତୁ—ହୁଏତ ପାଖରେ ରୋଗୀ ରଖି ଚିକିତ୍ସା କରିବାର ଇଚ୍ଛା ମୋର ରହିଛି—କିନ୍ତୁ ଏପର୍ଯ୍ୟନ୍ତ ତାର ତ କୌଣସି ବ୍ୟବସ୍ଥା ମୁଁ କରି ପାରିନି—ତେଣୁ ମୁଁ ଆପଣଙ୍କୁ କି ଚାକିରି ଦେବି ?

ମୀନା—ଓ ହୋ, ତା ହେଲେ ମୋର ବୁଝିବାରେ ଭୁଲ ହୋଇଗଲା ।

ସ୍ୱପ୍ନ—ମାନେ ?

ମୀନା—ଆପଣ ଆମେରିକାରୁ ଫେରିଲେ ଗୋଟାଏ ବଡ଼ ହସପିଟାଲ ଖୋଲିବେ ବୋଲି ମୁଁ ଆଗରୁ ଶୁଣିଥିଲି ।

ସ୍ୱପ୍ନ—ଆଗରୁ ଶୁଣିଥିଲେ ? କିଏ କହିଲା ? କିମିତି ଶୁଣିଥିଲେ— ଆଚ୍ଛା ଆପଣ ବସନ୍ତୁ—ହଁ ବସନ୍ତୁ—(ମୀନା ଗୋଟିଏ ଚୌକିରେ ବସିଲେ ) ଆଚ୍ଛା ପ୍ରଥମେ ଆପଣ କହନ୍ତୁ ତ-ମତେ ଆପଣ ଆଗରୁ ଜାଣିଲେ କିମିତି ?

ମୀନା—କଳ୍ପତରୁ ବାବୁଙ୍କ ସହିତ ଆମର ସମ୍ବନ୍ଧ ଥିଲା—ସେଇଠୁ ମୁଁ ଆପଣଙ୍କ ବିଷୟରେ କିଛି କିଛି ଶୁଣିଛି ।

ସ୍ୱପ୍ନ—ଓ—ବୁଝିଲି—କଥାଟା ଠିକ୍ ଶୁଣିଚନ୍ତି—ଗୋଟାଏ ବଡ଼ ହସପିଟାଲ ଖୋଲି ସ୍ୱାଧୀନ ଭାବରେ ରୋଗୀମାନଙ୍କର ଚିକିତ୍ସା କରିବାର ଆଗ୍ରହ ନେଇ ମୁଁ ଆମେରିକା ଯାଇଥିଲି- ହସପିଟାଲଟାଏ ମଧ୍ୟ ଖୋଲିବି—ଚେଷ୍ଟା କରୁଚି କିନ୍ତୁ ଟିକେ ଡ଼େରି ହବ ।

ମୀନା—ରୋଗୀମାନଙ୍କର ବ୍ୟବସ୍ଥା ନ କଲା ଯାଏ, ମୋତେ ଯେ କୌଣସି କାମ ଦିଅନ୍ତୁ—ପାରିଶ୍ରମିକ ହିସାବରେ ଯାହା

ଦେବେ ମୁଁ ରାଜି—ମା ଭାଇଙ୍କୁ ବଞ୍ଚାଇବା ପାଇଁ ଗୃହକର୍ମ ଖଣ୍ଡେ ମୋର ନିହାତି ଦରକାର—

ସ୍ୱପ୍ନ—ଆପଣଙ୍କର ଅବସ୍ଥା ମୁଁ ବୁଝୁଛି—କିନ୍ତୁ ଆପଣ ନର୍ସିଂ ଗ୍ରୁଡ଼—ଅନ୍ୟ କୌଣସି କାମ ପାଇଁ ଅନ୍ୟ କୋଉଠି ଚେଷ୍ଟା କଲେନି—ସେମିତି ଯୋଗ୍ୟତା କଣ ଆପଣଙ୍କର ନାହିଁ !

ମୀନା—ଯୋଗ୍ୟତା ଯାହା ଅଛି ଗୃହକର୍ମ ଖଣ୍ଡେ ହୁଏତ ପାଇ ପାରିବି—କିନ୍ତୁ ଆପଣ ଜଣେ ଉଚ୍ଚ ଶିକ୍ଷିତ ଡାକ୍ତର—ଯଥେଷ୍ଟ ଚିନ୍ତାକରି ସାରିଲା ପରେ ମୋର ସେ ଆତ୍ମବିଶ୍ୱାସ ଆସିଛି—ଏଣୁ ମୁଁ ଆପଣଙ୍କ ପାଖକୁ ଆସିଛି—

ସ୍ୱପ୍ନ—ଧନ୍ୟବାଦ—ଆପଙ୍କର ଧାରଣା ମୂଲ୍ୟହୀନ ନୁହେଁ—ଭଗବାନଙ୍କ ପାଖରେ ମୁଁ ପ୍ରାର୍ଥନା କରୁଛି, କେବଳ ଆପଣଙ୍କ—ଆପଣଙ୍କ ପରି ପ୍ରତ୍ୟେକଙ୍କର ମୋ ପ୍ରତି ସେ ଧାରଣା ଦୃଢ଼ ହଉ, ଆପଣ ଯଦି କିଛି ମନ ନ କରନ୍ତି—ମୁଁ ଆପଣଙ୍କୁ ଗୋଟେ କଥା କହିବି ।

ମୀନା—କୁହନ୍ତୁ—

ସ୍ୱପ୍ନ—ମୋର ହସପିଟାଲ ଖୋଲିବା ପର୍ଯ୍ୟନ୍ତ କିଛି କାମ ନ ଥିଲେ ବି ମୋ ପାଖରୁ ଆପଣଙ୍କର ମା ଭାଇଙ୍କ ପାଇଁ କିଛି କିଛି ଟଙ୍କା ନେଇଯାନ୍ତୁ—

ମୀନା—ନାଇଁ ଆଜ୍ଞା—ଭିକ୍ଷା ନବାକୁ ମୁଁ ଆଦୌ ପସନ୍ଦ କରେନା—

ସ୍ୱପ୍ନ—ନା ଏଇଟାକୁ ଆପଣ ଭିକ୍ଷା ବୋଲି ଭାବନ୍ତୁ ନାହିଁ—ଆପଣଙ୍କ ପରି ଜଣେ ଝିଅ, ମୋର ରୋଗୀମାନଙ୍କ ପାଇଁ ଦରକାର, ବର୍ତ୍ତମାନ ମୋର ଯଥେଷ୍ଟ ଧାରଣା ହେଇଛି,

ଆପଣଙ୍କର ନିଷ୍ଠାପରତା ମୋତେ ଯଥେଷ୍ଟ ସାହାଯ୍ୟ କରିବ
ଏଣୁ ଅଜଠୁ ମୁଁ ଆପଣଙ୍କୁ ସାହାଯ୍ୟ କରିବାକୁ ଚାହେଁ—
ଯଦି ପାରନ୍ତି ତା ହେଲେ ଆସି ମତେ ଆପଣ ସାମୟିକ
ସାହାଯ୍ୟ କରନ୍ତୁ ।

ମୀନା—ବହୁ ଧନ୍ୟବାଦ ଆପଣଙ୍କୁ ।

ସ୍ୱପ୍ନ—ଆଚ୍ଛା ଗୋଟେ କଥା ଆପଣ ମୋତେ କହି ନାହାନ୍ତି—
ଆପଣଙ୍କର ଉପରେ କଣ ଇମିତି କେହି ନାହାନ୍ତି ଯେ,
ଆପଣଙ୍କର ଚାକିରି କରିବା ଏକାନ୍ତ ପ୍ରୟୋଜନ ?

ମୀନା—ବାପା ନାହାନ୍ତି—ବଡ଼ ଭାଇ ଯଦିବା ଅଛନ୍ତି, ତାଙ୍କ
ରୋଜଗାରରେ ଚଳିବାକୁ ଆମେ କେହି ରାଜିନୋହୁ—

ସ୍ୱପ୍ନ—କାହିଁକି ତାଙ୍କର ଅପରାଧ !

ମୀନା—ସେ ଅନ୍ୟାୟ, ଅସତ୍ ଉପାୟରେ ଟଙ୍କା ରୋଜଗାର କରି
ଆମକୁ ବଞ୍ଚାଇବାକୁ ଚାହାନ୍ତି—

ସ୍ୱପ୍ନ—ଯଥା—

ମୀନା—ଏଇ ଧରନ୍ତୁ ଚୋରି—

ସ୍ୱପ୍ନ—କିନ୍ତୁ ଏତେଦିନ ଯାଏ ଆପଣମାନେ ଚଳୁଥିଲେ କିମିତି ?

ମୀନା—ଦେଢବର୍ଷ ତଳେ ଭାଇ ଚାକିରି କରୁଥିଲେ—ପରିସ୍ଥିତିରେ
ପଡ଼ି ଚୋରି ଅପରାଧରେ ସେ ଯାଆନ୍ତି ଜେଲ—ଦୁଃଖେ, କଷ୍ଟେ
—ମା, ସାନଭାଇ, ମୁଁ-ଆମେ ତାଙ୍କର ଫେରିବା ବାଟକୁ
ଚାହିଁ ରହିଲୁ—ସେ ବି ଫେରିଲେ—ଚାକିରି ପାଇବା ତ
ଦୂରର କଥା—ରିକ୍ସା ଚଳେଇବା ପାଇଁ କେହି ତାଙ୍କୁ

ଶିକ୍ଷା ଖଣ୍ଡେ ବି ଦେଲେନି—ସମାଜର ବ୍ୟବହାର ଓ ଆମ ଦୁର୍ଦ୍ଦଶାର ଦେଖି ସେ ମନୁଷ୍ୟତ୍ୱ ଗ୍ରୁଡ଼ି ଆଶ୍ରା କଲେ ପଶୁତ୍ୱକୁ—ତାଙ୍କୁ ତାଙ୍କ ବାଟରୁ ଫେରାଇ ନ ପାରି ମୁଁ ଶପଥ କରିଛି ନିଜେ ରୋଜଗାର କରି ମା ଓ ଗ୍ରୋଟ ଭାଇଙ୍କୁ ପୋଷିବି ।

ସ୍ୱପ୍ନ—ବାସ୍ତବିକ୍ ଆପଣଙ୍କର ସ୍ପଷ୍ଟବାଦିତା ଆଉ ମନରେ ଦମ୍ଭ ଦେଖି ମୁଁ ମୁଗ୍ଧ ହୋଇଛି—ଆପଣଙ୍କର ସତ ସାହାସ ଦେଖି ମୋର ମଧ୍ୟ ଗର୍ବ ହେଉଛି—

ଲିଲି—(ପ୍ରବେଶ କରି) ହୁଁ ଖାଲି ଗର୍ବ କାହିଁକି—ନିଜକୁ ଗୌରବାନ୍ୱିତ ମନେ କରିବା ମଧ୍ୟ ଉଚିତ ।

ସ୍ୱପ୍ନ—ଆରେ ଲିଲି ଦେଖ ! ବସନ୍ତୁ—( ମୀନା ପ୍ରତି ) ହଉ ଆପଣ ଆସନ୍ତୁ—ଆପଣ କାଲିଠୁ ଆସିବେ । ମୁଁ ବୁଝେଇ ଦେବି ଆପଣଙ୍କର କାମ—ଗ୍ରୁକିରି ଦେଲି ସତ—ହେଲେ ପାରିଶ୍ରମିକ କଣ ଦେଇ ପାରିବି ନ ପାରିବି ସାତଦିନ ପରେ କହିବି ।

ମୀନା—ଆପଣଙ୍କ ଉପରେ ମୋର ବିଶ୍ୱାସ ଅଛି । ହଉ ଆଜ୍ଞା ମୁଁ ଆଜି ଆସୁଛି—ନମସ୍କାର (ଗ୍ରୁଲିଗଲେ)

ଲିଲି—ଗଲେନି ଟିକିଏ ବଳେଇ ଦେଇ ଆସି ଥାନ୍ତେ—ଏକା ଏକା ଗଲି ବିଗ୍ରୁରି ।

ସ୍ୱପ୍ନ—ଦୁନିଆରେ ଏକା ଗ୍ରୁଲିବାର ଦାମ୍ଭିକତା ନେଇ ଯେ ଗ୍ରୁଲିପାରେ—ତାର ସାଙ୍ଗ ଦରକାର ହୁଏନା-

ଲିଲି—ସେ କିଏ ? ତା'ର କିଛି ପରିଚୟ ଜାଣିନ୍ତ ?

ସ୍ୱପ୍ନ—କର୍ମଚାରୀ ଭାବରେ ଯେତିକି ଦରକାର ସେତିକି ଜାଣିଛି—ତାର ବ୍ୟକ୍ତିଗତ ଜୀବନୀ ଜାଣିବାର ପ୍ରୟୋଜନ ନାହିଁ—

ଲିଲି—କାହିଁକି ସେ ଚାକରୀ କରିବାକୁ ଆସିଛି ଜାଣନ୍ତି ?

ସ୍ୱପ୍ନ—ଶୁଣିଲି ଭାଇ ତାର ଜଣେ ଫେରାର ଦାଗୀ—ଭାଇ ପୁଣି ଅବାଟରେ ଚାଲିବାରୁ ଭଉଣୀ ଆତ୍ମବିଶ୍ୱାସ ନେଇ ବାହାରି ପଡ଼ିଚି ନିଜେ ରୋଜଗାର କରି ମା, ଭାଇଙ୍କୁ ବଞ୍ଚାଇବା··· ଛାଡ଼ନ୍ତୁ, ମୋର ବ୍ୟକ୍ତିଗତ କାର୍ଯ୍ୟ କଳାପ ଉପରେ ମୁଣ୍ଡ ଘୂରାଇ ସମୟ ନଷ୍ଟ କରିବା ଉଚିତ୍ ନୁହେଁ, କୁହନ୍ତୁ, ଆପଣ କୁଆଡ଼େ ଆସିଥିଲେ ?

ଲିଲି—ମୁଁ ଆସିଥିଲି ଆପଣଙ୍କୁ ଗୋଟିଏ ଖବର ଦବାପାଇଁ ଯେଉଁଟାକି ଆପଣଙ୍କ ଜୀବନରେ ଯଥେଷ୍ଟ ଉପକାରରେ ଆସିବ । ବମ୍ବେରୁ ଆପଣଙ୍କ ପାଇଁ ଗୋଟିଏ ହସପିଟାଲର ପ୍ଲାନ ମୁଁ ବାବାଙ୍କୁ କହି କରେଇ ଆଣିଚି—ଆପଣଙ୍କ ପସନ୍ଦ ହେଉଚି କି ନାହିଁ କୁହନ୍ତୁ ତ ? (ପ୍ଲାନଟା ଦେଖେଇଲେ)

ସ୍ୱପ୍ନ—ବଡ଼ ଦୁଃଖର ବିଷୟ ଲିଲି ଦେବୀ—ମୋର ସମ୍ପୂର୍ଣ୍ଣ ମତ ନ ପାଇ ଆପଣମାନେ କାହିଁକି ଆଗେଇ ଚାଲିଚନ୍ତି ! ଆପଣଙ୍କ ବାବା ମୋ ପାଇଁ ଯେତିକି ଉପକାର କରିଛନ୍ତି, ସେଥିପାଇଁ ମୁଁ ଆପଣଙ୍କ ନିକଟରେ ଋଣୀ, ସେ ଋଣ ପରିଶୋଧ କରିବା ହଉଚି ମୋର କର୍ତ୍ତବ୍ୟ । ଆପଣଙ୍କ ସହିତ ମୋ ବିବାହଟା ଏକାବେଳକେ ଅଲଗା ଜିନିଷ—ତାକୁ ଭିତ୍ତି କରି ଆପଣ ଆଗକୁ ଆଉ କିଛି କରନ୍ତୁ ନାହିଁ—

ଲିଲି—ତା ହେଲେ ଆପଣ ସ୍ପଷ୍ଟ କହିବାକୁ ଚାହାନ୍ତି ଯେ, ବାବାଙ୍କ ପ୍ରସ୍ତାବରେ ଆପଣ ଆଦୌ ରାଜି ନୁହନ୍ତି !

ସ୍ୱପ୍ନ—ବର୍ତ୍ତମାନ ପାଇଁ ନୁହେଁ—ଭବିଷ୍ୟତ ପାଇଁ ମୁଁ କରୁଛି ଚିନ୍ତା କରନ୍ତି—ସେଥିପାଇଁ ସମସ୍ତ ଆଉ ପରିସ୍ଥିତି ମଧ୍ୟ ଦରକାର ।

ଲିଲି—ତା ହେଲେ, ବାବାଙ୍କୁ ମୁଁ ଏଇଆ କହିଦେବି ?

ସ୍ୱପ୍ନ—ମୋ ତରଫରୁ ସେତିକି କରି ପାରିଲେ-ମୁଁ ବିଶେଷ ଖୁସି ହେବି ।

ଲିଲି—ଇସ ଆପଣ ଏତେବଡ ଅକୃତଜ୍ଞ ! ବାସ୍ତବିକ୍ ବାବାଙ୍କର ମସ୍ତବଡ଼ ଭୁଲ ହେଇଗଲା—

ସ୍ୱପ୍ନ—ଆଦୌ ନୁହେଁ—ଭୁଲ କାହିଁକି ହବ ? ମୁଁ ତ ଦଶହଜାର ଜାଗାରେ ପନ୍ଦର ହଜାର ଟଙ୍କା ଦବାକୁ ପ୍ରସ୍ତୁତ ଅଛି । ଆପଣ ବର୍ତ୍ତମାନ ଆସନ୍ତୁ ।

ଲିଲି—ହଁ ଆସୁଚି, କିନ୍ତୁ ଟଙ୍କାଟା ପରିଶୋଧ କରିବାର ନିର୍ଦ୍ଦିଷ୍ଟ ତାରିଖଟା ଲେଖି ବାବାଙ୍କୁ ଗୋଟିଏ ହ୍ୟାଣ୍ଡନୋଟ ଦେଇ ଆସନ୍ତୁ ।

ସ୍ୱପ୍ନ—ଆପଣଙ୍କର ମୂଲ୍ୟବାନ ପ୍ରସ୍ତାବ ପାଇଁ ଆପଣଙ୍କୁ ଧନ୍ୟବାଦ୍-ଆସନ୍ତୁ—

ଲିଲି—ତାର ମାନେ ? ଆପଣ କଣ ମତେ ଜୋର କରି ତଡି ଦେବାକୁ ଚାହାନ୍ତି ?

ସ୍ୱପ୍ନ—ଜଣଙ୍କର ବ୍ୟବହାର ଅନ୍ୟପ୍ରତି ଅତି କଦର୍ଯ୍ୟ ହେଇ ଉଠିଲେ, ଅନ୍ୟ ଜଣେ ତା'ଠାରୁ ଦୂରେଇ ଯାଏ, ନଚେତ୍ ଜୋରକରି ଅଲଗା କରିବାକୁ ବାଧ୍ୟ ହୁଏ ।

ଲିଲି—ଆପଣଙ୍କ ବ୍ୟବହାର ତ କିଛି କମ ନୁହେଁ ? ଆମର ଟଙ୍କାରେ ମଣିଷ ହେଇ ଆମପ୍ରତି ଯିମିତି ବ୍ୟବହାର କରି

ଗୁଲଛନ୍ତି, ସେଥିରେ ଯେ ଆପଣ କୋଉ ସ୍ତରର ଲୋକ, ତା କ'ଣ ମୁଁ ବୁଝିପାରିନ ?

ସ୍ୱପ୍ନ—ଲିଲି ଦେବୀ ? ଆପଣ ଇଚ୍ଛାକରି ମୋ ସହିତ ଝଗଡ଼ା କରିବା ପାଇଁ ଗୁଡ଼ାଏ ଯୁକ୍ତି ଆରମ୍ଭ କରୁଛନ୍ତି ? ମୁଁ ଆପଣଙ୍କୁ ଅନୁରୋଧ କରୁଛି, ଦୟାକରି ଆପଣ ଗୁଲଯାନ୍ତୁ—

ଲିଲି—ଖାଲି ଝଗଡ଼ା ନୁହେଁ-ମନ ଗୁହୁଁଛି ଆପଣଙ୍କ ମାନ, ସମ୍ମାନକୁ କ୍ଷତ ବିକ୍ଷତ କରି ଦୁନିଆ ଆଗରେ ଆପଣଙ୍କୁ ଗୋଟିଏ ପଙ୍କ କରି ଛାଡ଼ିଦା କରି ଦେବା ପାଇଁ—

ସ୍ୱପ୍ନ—ଲିଲି ଦେବୀ—"ଫର୍ ହେଭନ ସେକ୍"—Stop it.

ଲିଲି—କାହିଁକି ଚୁପ ହେବି—ଆପଣ ଆମ ପାଖରେ ଋଣୀ—ସେ ଋଣ ପରିଶୋଧ କଲା ପର୍ଯ୍ୟନ୍ତ, ଆପଣଙ୍କୁ ଇମିତି କଥା ସବୁ ଶୁଣିବାକୁ ପଡ଼ିବ ଏବଂ ଶୁଣିବାକୁ ବାଧ୍ୟ । ଆଚ୍ଛା ହଉ ମୁଁ ଆସୁଛି—କିନ୍ତୁ ପରିସ୍ଥିତି ପାଇଁ ଆପଣ ପ୍ରସ୍ତୁତ ରୁହନ୍ତୁ—

(ଲିଲି ରାଗରେ ତମ ତମ ହୋଇ ଗୁଲିଗଲେ )

---

## ୪ର୍ଥ ଦୃଶ୍ୟ

(ସହରର ପଥ—ନିସ୍ତବ୍ଧ ରଜନୀର ବକ୍ଷଚିରି ଶୁଣା ଯାଉଛି ପୋଲିସର ହୁଇସିଲ—ଦାଗୀ ଘୂରି ବୁଲୁଥାଏ ବ୍ୟସ୍ତ ଭାବରେ—ଆସିଲେ ବିଶୁ )

ଦାଗୀ—କିଏ ବିଶୁ ? ପାଟି କାହିଁକି ?

ବିଶୁ—ପାରିଲିନି-ପୋଲିସ ଜାଣି ପାରିଲା—ମୋ ପଛରେ ପୋଲିସ କ'ଣ କରିବି କୁହ-ମୋତେ ବଞ୍ଚାଅ ତା ନ ହେଲେ ପୁଣି-ଥରେ

ଦାଗୀ—ଯା-ସେଇ ଭଙ୍ଗାଘରେ ପଶିଯା-ହୁସିଆର ହୋଇ ଯିବୁ —ତାର କଣ୍ଠା ଗୃହଆଡ଼େ ଯନ୍ତ୍ରରୁ—ଶୀଘ୍ର ପଳା ଏଠୁ (ବଣୁ ଚାଲିଗଲେ ଭିତରୁ ଜଣେ ପୋଲିସ କ୍ଷିପ୍ର ଗତିରେ ଆସିଲେ— ଦାଗୀବୁଢା ଗୋଟିଏ କୋଣରେ ଲୁଚିଗଲା, ପୋଲିସ ସ.ଇ. ଚାରିଆଡ଼କୁ ନିରୀକ୍ଷଣ କରୁଥାନ୍ତି ଠିକ୍ ମାରି ମାରି-ବିପରୀତ ଦିଗରୁ ଜଣେ କନେଷ୍ଟବଲ ଆସିଲେ)

କନେଷ୍ଟବଲ—ସାର ! କୌଣସି ସନ୍ଧାନ ମିଳିଲା ନାହିଁ—କଣ୍ଠା ବାଡ଼ ଡେଇଁ ପଳାଇଗଲା ବୋଧହୁଏ—ଲୋକଟା ଭାରି ସାଂଘାତିକ ପରି ମନେ ହୁଏ—

ସ.ଇ.—ସେ ଯେତେ ସାଂଘାତିକ ହେଉ ନା କାହିଁକି— ତୁମର କର୍ତ୍ତବ୍ୟ ତୁମକୁ କରିବାକୁ ପଡ଼ିବ ।' ତୁମେ ଆଉ ଡେରି କରନାହିଁ । ଆଉ ଦୁଇ ହୃରିଜଣଙ୍କୁ ନେଇ ଚାରିପଟ ଘେରାଉ କରିଦିଅ—ଖବରଦାର ଖୁବ୍ ସାବଧାନ ଥିବ— ଲୋକଟା ହାତରେ ଗୋଟାଏ ବଡ଼ ଛୁରୀ ଚକ୍ ଚକ୍ କରୁଥିବାର ମୁଁ ଠିକ୍ ମାରି ଦେଖିଛି—ଯାଅ—ଶୀଘ୍ର ଯାଅ— (କନେଷ୍ଟବଲ ଚାଲିଗଲେ-ସ.ଇ. ଠିକ୍ ମାରି ଚାରି ଆଡ଼କୁ ନିରୀକ୍ଷଣ କରୁ କରୁ-ଦାଗୀ ବୁଢ଼ା ମୁହଁରେ ଠିକ୍ ଆଲୁଅ ପଡ଼ିଲା—

ସ.ଇ.—(ଚମକି) କିଏ ? ଓ ଦାଗୀବୁଢ଼ା—

ଦାଗୀ—ହଁ ହୁଜୁର୍—ବୁଢ଼ା ବାଘ ଆକର୍ମଣ୍ୟ ହୋଇ ପଡ଼ି ରହିବ ଶିକାର ପାଉନି—

ସ.ଇ.—ଏଠି କଣ କରୁଛୁ ?

ଦାଗୀ—ଦେଖୁଛି—ପୋଲିସ ଆଉ ଚୋରର କାରସାଦି-ଚୋରଟା କିନ୍ତୁ ଖସିଗଲା—ହାଃ-ହଃ-ହାଃ—

ସ.ଇ.—(ଧକ୍କାଟାଏ ମାରି)-ଏ ବୁଢ଼ା, ଏଇବାଟେ ଯୋଉ ଚୋରଟା ଗଲା—ଦେଖିଛୁ କୋଉବାଟେ ଦେଇଗଲା ?

ଦାଗୀ—ଦେଖିଛି-ଖୁବ ଜୋରରେ ଦୌଡ଼ି ପଳାଇଗଲା-ଛକ ଉପରୁ ରିକ୍‌ସା କି ଟ୍ୟାକ୍‌ସି ଧରି ବହୁ ଦୂରକୁ ଚାଲି ଯିବଣି— ଥାନାକୁ ଯାନ୍ତୁ କେଶ ଇ ପଡ଼ିବେ—

ସ.ଇ. —ତାକୁ ତୁ ଚିହ୍ନୁ ?

ଦାଗୀ—ଏକାବେଳକେ ନୂଆଟା—ଚିହ୍ନିବା ପାଇଁ ଧରି ପକେଇ ଥିଲି—ଧକ୍କାଟାଏ ପକେଇଲା—ଭିଡ଼ି କାଟିଲା—ଫୋପାଳିଘର ବୁଝ୍‌ ମାଡ଼ଭଳି ଲଟିଲା—ହାତଟା ଭାରି ଟାଣୁଆ—ଗୋଟିଏ ମାଡ଼ରେ ବସି ପଡ଼ିଥିଲି—ଏବେ ହୋସ ଆସିଲା କହିପାରିବିନି ସେ କିଏ—

ସ.ଇ.—ତାକୁ ତୁ ଧରେଇ ଦେଇ ପାରିବୁ ? ବହୁତ ଟଙ୍କା ତତେ ହାତ ଆସିବ—

ଦାଗୀ—ମାରି ପକେଇବ—ଟାଣୁଆ ଲୋକଟା । ଦେଢ଼ଶୋଗୁଣ୍ଡାଙ୍କ ଲୁହାଭଳି ଶକ୍ତ—ଅଣ୍ଟାରୁ ମୋର ବଳ କମିଗଲାଣି— ପାରିବିନି—ବୋସ୍ତ କରି ଠିକଣା ସନ୍ଧାନ କରି ପାରିଲେ ପଠେଇ ଦେବି ।

ସ.ଇ.—ହଉ ତୁ ଥା, ମୁଁ ଦେଖେଁ ସେଇଟା କୁଆଡ଼େ ଗଲା । (ସ.ଇ. ଚାଲିଗଲେ—ଦାଗୀବୁଢ଼ା ହୋ ହୋ ହୋଇ ହସିଲା ଲୁଚି ଲୁଚି ଆସିଲା ବିଶୁ)

ଦାଗୀ—ଆଉ ଭୟ ନାହିଁ, ରକ୍ଷା ପାଇଗଲୁ, ଏଣିକି ଅଧିକ ହୁସିଆର ଥିବୁ ।

ବିଶୁ—ଏତେ ଏତେ ବଡ଼ ସାଙ୍ଘାତିକ କାମ କରିବାଭଳି ତାକତ ମୋ ଦେହରେ ନାହିଁ ମୁଁ ପାରିବିନି—

ଦାଗୀ—ଅଲବତ୍ ପାରିବୁ, କେହି ଧରି ପାରିବେ ନି—

ବିଶୁ—ନା, ନା, ମନର ବଳ ଆସ୍ତେ ଆସ୍ତେ କମି ଯାଉଛି । ମୋ ଦେହ ଥରୁଚି, ମୁଁ ପାରିବି ନି ।

ଦାଗୀ—କୁଆଡ଼େ ଯିବୁ ? କଣ କରିବୁ ? ପୋଲିସ୍ ବାଲା ତତେ କେଉଁଠି ଗ୍ଲାଡ଼ିବେନି—ମାରି ମାରି ଦେହରେ କଣ୍ଟା ରଖିଦେବେ ସେତେବେଳେ କଣ କରିବୁ ? କିଛି କରି ପାରିବୁନି—କାନ୍ଦିବୁ ହାଃ-ହାଃ-ହାଃ ( କାହାକୁ ଦୂରରୁ ଦେଖି ) ଏଁ-ଏଁ-କିଏ ଆସୁଚି ଟିକିଏ ଲୁଚିଯା(ବିଶୁକୁ ଟାଣିନେଇ ନିଜେ ଲୁଚିଗଲା ।) କଥାଭଙ୍ଗୀ ହୋଇ ପ୍ରବେଶ କଲେ ଲିଲି ଓ ପଶୁପତି)

ପଶୁ—ଆପଣଙ୍କର ନିମକ ଖାଇଚି ଆଜ୍ଞା—ଆପଣଙ୍କ ପାଖରେ ନିମକ ହାରାମୀ କରିବି ? ଏ କଥା ଆପଣ ଭାବି ପାରୁଛନ୍ତି ? ଆପଣଙ୍କର ଅପମାନ ମୋର ଅପମାନ ନୁହେଁ ? ଆପଣ ଯଦି ଚାହାନ୍ତି ମୁଁ ପ୍ରତିଜ୍ଞା କରି କହୁଚି ଦୁନିଆର ପ୍ରତ୍ୟେକଙ୍କ ଆଖିରେ ଧୂଳି ଦେଇ ସ୍ୱପ୍ନକୁମାରଙ୍କ ରକ୍ତ ଆଣି ଆପଣଙ୍କୁ ହାତେ ହାତେ ଦେଖାଇବି ।

ଲିଲି—ସେତିକି, ସେତିକି ମୋର ଦରକାର ପଶୁପତି ବାବୁ—କେବଳ ସ୍ୱପ୍ନକୁମାର କାହିଁକି ତା ପରି ପ୍ରତ୍ୟେକଟି ଜାନୁଆରଙ୍କୁ ମୁଁ ଯଦି ହାତେ ହାତେ ଖୁନ୍ କରି ପାରନ୍ତି ତାହେଲେ କେଜାଣି ମୁଁ ଶାନ୍ତି ପାନ୍ତି ।

ପଶୁ—ଠିକ ଅଛି—ଆପଣ ଆସନ୍ତୁ—ମୁଁ କମିତି ଭାବରେ କଣ ପ୍ଲାନ୍ ଆଉଟ୍ କରିଚି ସବୁ ଆପଣଙ୍କୁ ଗୋଟି ଗୋଟି କରି କହିବି—(ଉଭୟେ ଚାଲିଗଲେ—ଦାଗୀ ବିଶୁକୁ ଟାଣି ଟାଣି ପଶୁପତିର ଯିବା ବାଟକୁ ହାତ ଦେଖାଇ ଠୋ ଠୋ ହୋଇ ହସି ଉଠିଲା ) ।

ଦାଗୀ—ହାଃ-ହାଃ-ହା ମାର ନେଇଗଲା—ପ୍ରଥମେ ସ୍ୱପ୍ନ କୁମାର୍—ତା ପରେ କଲ୍ପତରୁ—ତା' ପରେ ଯଦି ଦରକାର ପଡ଼େ ତା ହେଲେ ତୋର ଅଲଆଳୀ ଭଉଣୀ ମୀନା । ସମସ୍ତଙ୍କୁ ଗୋଟି ଗୋଟି କରି ଶେଷ କରିଦେବ—ଲଳ ହେବ ପାଦତଳର ସେବକା ଆଉ ପଶୁପତି—ହାଃ-ହା-ହାଃ—ତୁ କାହିଁକି ପାରିବୁନି—? ଉଁ ?

ବଶୁ—ମେ ଉପେ ଜାନ୍‌ସେ ମାର ଡାଲୁଙ୍ଗା—( ଚାଲିଗଲା )
(ଦାଗୀ ବଶୁର ଯିବା ବାଟକୁ ଚାହିଁ ହୋଃ-ହୋଃ ହୋଇ ହସି ଉଠିଲା ।

---

## ପଞ୍ଚମ ଦୃଶ୍ୟ

(ପଶୁପତି ବାବୁଙ୍କ ଘର ଅନ୍ଦର-ବାହାରୁ କଥାଭାଷା ହୋଇ ଆସିଲେ ପଶୁପତି ଓ ଲଳ)

ଲଳ—ଆପଣ ଯେ କୌଣସି ପନ୍ଥା ଧରନ୍ତୁ ନା କାହିଁକି ପଶୁପତି ବାବୁ, ମୁଁ ଚାହେଁ ସ୍ୱପ୍ନକୁମାର ଏ ଦୁନିଆରୁ ନିଶ୍ଚିହ୍ନ ହୋଇଯାଉ—ତାର ସତ୍ତା ପର୍ଯ୍ୟନ୍ତ ନ ରହୁ ।

ପଶୁ—ଲଳ ଦେବୀ ! ଆପଣ ଯିମିତି ଉତ୍ୟକ୍ତ ହୋଇ ଉଠିଛନ୍ତି ସେଥିରେ ଧରା ପଡ଼ିଯିବାର Chance ଢେର ବେଶି । କାମଟା ତ ଆଉ ଦିନେ ଦି' ଦିନ ଭିତରେ ହୋଇ ପାରୁନି ? ଟିକିଏ ସମୟ ଲାଗିବ କିନ୍ତୁ ଆପଣ ଯିମିତି ଭାବରେ ଅଧୈର୍ଯ୍ୟ ହୋଇଛନ୍ତି, ସେଥିରେ ତ ମୋର ଭାରି ଭୟ ହେଉଛି—

ଲିଲି—ନାଁ ନାଁ, ଆପଣ ମତେ ଭୁଲ ବୁଝନ୍ତୁ ନାହିଁ—ମୋର ଯଥେଷ୍ଟ ଧୈର୍ଯ୍ୟ ଅଛି—ଆପଣ କୌଣସି ଭୟ କରନ୍ତୁ ନା ।

ପଶୁ—(ବାହାର ଦରଜାକୁ ଦେଖି) ଆରେ ଆରେ ଦରଜାଟା ଖୋଲା ରହିଲା—ବନ୍ଦ କରି ଆସେ, ତା ନ ହେଲେ ଆମର ଚିଠି ଯଦି କେହି ଧରିଥାନ୍ତି, ତା ହେଲେ ସର୍ବନାଶ— (ଦୁଆର ବନ୍ଦ କରି ଫେରିଲେ)—

ଲିଲି—କିନ୍ତୁ ମୁଁ ଭାବୁଚି, ପଶୁପତି ବାବୁ, ତାଙ୍କୁ ଜୀବନରେ ମାରି ନ ଦେଇ ଇମିତି ଆଘାତ ଦିଆଯାନ୍ତା, ଯୋଉଥିରେ କି ସାରା ଜୀବନଟା ସେ ଅକର୍ମଣ୍ୟ ହୋଇ ପଡ଼ି ରହନ୍ତା, ଆଉ ମୁଁ ତାଙ୍କୁ ସବୁବେଳେ ଆଖିରେ ଦେଖୁଥାନ୍ତି—

ପଶୁ—ହୁଁ, ହୁଁ, ହୁଁ—ଆରେ ଆପଣ ଯାହା ଚାହିଁବେ ଆଉ ଯିମିତି ଭାବରେ ଚାହିଁବେ, ମୁଁ ସବୁ କରିପାରିବି—ଆପଣଙ୍କର ଟଙ୍କା ଅଛି, ଆଉ ମୋର ଅଛି ବ୍ରେନ୍ । ଏପରି ସ୍ଥଳେ ଏଇଟାତ ନହାତି ମାମୁଲି—I mean it is a minor thing (ଠିକଏ ରହି) କିନ୍ତୁ ଲିଲି ଦେବୀ ! ବିନିମୟରେ ମୋର ପ୍ରାପ୍ୟଟାତ କିଛି କହିଲେ ନା ?

ଲିଲି—(ହସି) ହସେଇଦେଲେ ପଶୁପତି ବାବୁ ! କ'ଣ ମୋର ନାହିଁ ? କ'ଣ ମୁଁ ନ ଦେଇ ପାରିବି ଆପଣ ମତେ କୁହନ୍ତୁ । ଆପଣ ଯାହା ଚାହିଁବେ, ମୁଁ ତା ଦେବାକୁ ପ୍ରସ୍ତୁତ ରହିଛି । ଟଙ୍କା କେତେ ଟଙ୍କା ଆପଣ ନେବେ ? ପାଞ୍ଚ ହଜାର ? ଦଶ ହଜାର ? ପଚିଶ ହଜାର ? ଦରକାର ପଡିଲେ ଲକ୍ଷେ ଟଙ୍କା ମଧ୍ୟ ଖର୍ଚ୍ଚ କରିବାକୁ ପ୍ରସ୍ତୁତ ଅଛି ।

ପଶୁ—ନାଁ । ଲିଲି ଦେଖ ‌ମୁଁ ଚାହୁଁଚି ମାତ୍ର ଗୋଟିଏ ସର୍ତ୍ତ—ଟେସଇଠା ହେଉଚି ଆପଣ ବିବାହ ନ କରି ସାରା ଜୀବନଟା ଏମିତି ରହିଯାନ୍ତୁ—

ଲିଲି—ତା'ର ମାନେ ? ସେଥିରେ ଆପଣଙ୍କର ଲାଭ ?

ପଶୁ—ଅନେକ ଦିନୁ ମନକଥା ମନରେ ମାରି ଗୋଟାଏ ସୁନ୍ଦର ପରିସ୍ଥିତିକୁ ଅପେକ୍ଷା କରିଥିଲି—(ଲିଲିକୁ ଧରି) ମୁଁ ଚାହେଁ ସାରା ଜୀବନଟା ଆପଣ ମୋ' ସାଙ୍ଗରେ କଟେଇ ଦିଅନ୍ତୁ—(ଲିଲି ପଶୁପତି ହାତରୁ ମୁକ୍ତ ହୋଇଯାଇଛି ଏବଂ ପଶୁପତି ଛାଡ଼ି ଦେଇଛି ।)

ଆପଣ ବିଶ୍ୱାସ କରନ୍ତୁ ଆମ ଦ' ଜଣଙ୍କର ଜୀବନ କମିତି ସରସ ସୁନ୍ଦର ହୋଇ ଉଠିବ । ସେଥିପାଇଁ ମୁଁ ବହୁ କଳ୍ପନା ମଧ୍ୟ କରିଚି—

ଲିଲି—ପଶୁପତି ବାବୁ ଏଇଟା ଆପଣଙ୍କର କି ରୂପ ?

ପଶୁ—ହୁଁ, ହୁଁ, ହୁଁ—ତୁମପରି ଗୋଟିଏ ସୁନ୍ଦରୀ ଯୁବତୀକୁ ତାର ଜୀବନ ଉପଭୋଗ କରିବାର ଇଚ୍ଛା କଲେ ମଣିଷର ରୂପ ଯାହା ହୁଏ ଏଇଟା ସେଇ ରୂପ ଲିଲି ଦେଖ—

ଲିଲି—(କାନରେ ହାତ ଦେଇ ଓଃ, ବନ୍ଦ କରନ୍ତୁ, ବନ୍ଦ କରନ୍ତୁ ପଶୁପତି ବାବୁ—ଚାଲିଯିବାକୁ ଉଦ୍ୟତ)—

ପଶୁ—(ଧରି ପକେଇ) ତୁମେ ଏତେ ସହଜରେ ଯାଇ ପାରିବ ନି ଲିଲି । ଦରଜା ବନ୍ଦ ଅଛି—ଆଉ ଚାବିଟା ବି ମୋ' ପାଖରେ ।

ଲିଲି—ପଶୁପତି ବାବୁ (ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରୁଥାନ୍ତି ।)

ପଶୁ—ଅଯଥା ଚେଷ୍ଟା କରନ୍ତୁ ନି ଲିଲି—ମୋ' ପ୍ରସ୍ତାବରେ ରାଜି ନ ହେବା ଛଡ଼ା ଆଉ ତୁମର ଅନ୍ୟ କୌଣସି ଉପାୟ ନାହିଁ—

ତୁମେ ଆସ—ଆନନ୍ଦରେ ଆସ—ଆଜ ଦିନଟାକୁ ଆମ ଜୀବନ ଯାତ୍ରା ପଥର ଶୁଭଦିନରେ ପରିଣତ କରାଯାଉ— you come as my beloved—ତୁମେ ଭାବ ଦେଖ ଗୋଟାଏ ଦୁର୍ଦ୍ଦାନ୍ତ ପଶୁ ହାତରେ ଅତ୍ୟାଚାରିତ ହେବା— ଆଉ ଗୋଟାଏ ସୁକୋମଳ ଶେଯ ଉପରେ ଶୋଇ ପ୍ରଣୟର ସ୍ୱପ୍ନ ତ ନୁହେଁ ? ତ ର ପ୍ରତ୍ୟେକଟି ଅନୁଭୂତିକୁ ଅନୁଭବ କରିବା—ଏ ଦୁଇଟା ଭିତରୁ ତୁମେ କୋଉଟାକୁ ବେଶି ପସନ୍ଦ କରିବ ? ତୁମେ ଯଦି ମତେ ଗ୍ରହଣ କର, ସତ କହୁଛି ଲିଲି— ମୁଁ ତୁମ ଆଗରେ ଦେଖା ଦେବି ଠିକ୍ ଗୋଟାଏ ଶ୍ରେଷ୍ଠ ଶିଶୁ ରୂପରେ—ତା' ନ ହେଲେ ଅତ୍ୟାଚାର ଛଡ଼ା ମୋର ତ ଅନ୍ୟ ଉପାୟ ନାହିଁ—

ଲିଲି—ପଶୁପତି ବାବୁ ? ଆପଣ ମଣିଷ ତ ନୁହନ୍ତି—ଗୋଟାଏ ଶଇତାନ—

ପଶୁ—ଓଃ ଲିଲି ! ଦେଖ ମୋ'ର ସମୟ ନାହିଁ—ତୁମେ ଶୀଘ୍ର ନିଷ୍ପତ୍ତି କର—ଦୁଇଟି କଥା ମୁଁ ତୁମକୁ କହୁଛି—Two things, only two things କ'ଣ Submission ? —(ଲିଲିର ହାତ ଧରିଲେ ଏବଂ ଲିଲି ହାତ ଛୁଆଁଇ ଦେଲେ) Alright ତୁମେ ଯାହା ଚାହୁଁଚ ତାହାହିଁ ହବ— (ଉଡ଼ ନେଲା ଗୁଣ୍ଡ ଉପରକୁ ଏବଂ ଲିଲି ନିଜକୁ ଛଡ଼େଇବା ପାଇଁ ଚେଷ୍ଟା କରୁଥାଏ । ଦୁଇଜଣଙ୍କ ଠେଲା ଠେଲି ଭିତରେ ପ୍ରବେଶ କଲେ ବିଶୁ ଭିତର ପଟେ—ଏବଂ ପଶୁପତିର ପଛରୁ ଧରି ପେଟକୁ ଲକ୍ଷ୍ୟକରି ମାରିଛି ଗୋଟାଏ ଭୁଷି—ପଶୁପତି ଚିତ୍କାର କରି ତଳେ ପଡ଼ି ଯାଇଛି—ବିଶୁ ପୁଣି ତାକୁ ଉଠେଇ

ଆଉରି ଦୁ' ତିନଥର ମାରିଲା—ପକ୍ଷୀପଡ଼ି ଚଞ୍ଚୁ ଉଠି ନ ପାରି ଛଟପଟ ହେଉଥାଏ ।)

ବଶୁ—(ହୁଁ ଲିଲି ପ୍ରତି)—ଚାଲନ୍ତୁ, ଲକ୍ଷପତି ବାପରେ ଏକମାତ୍ର ଅଲିଅଳୀ ଝିଅ ଧ୍ୟାନମଗ୍ନ କାହିଁକି ? ଚାଲନ୍ତୁ ଝରଣାପଦରେ ପଦାର୍ପଣ ଦେଇ ଆସିବ—ଏତିକି ସୌଭାଗ୍ୟର କଥା, ତୁମ ନିଜ ରୂପଟା ନିଜ ଆଖିରେ ଦେଖି ପାରିବ—ଜଳଧି ଚାଲ—ମୋ ପଛରେ ସବୁବେଳେ ପୋଲିସ—ମୁଁ କେତେବେଳେ ହେଲେ ନିରାପଦ ନୁହେଁ ।

ଲିଲି—ତୁମେ ତେବେ ଚାଲିଯାଅ । ମୁଁ ଏକା ଯାଇ ପାରିବି—

ବଶୁ—ବେଶ୍, ବେଶ୍ । ଯଦି ପାରୁଛ ତେବେ ଚାଲିଯାଅ ମୁଁ ଯାଉଛି—

ଲିଲି—ବଶୁଭାଇ ! ତୁମେ ମୋତେ କ୍ଷମା କରିବନି, ବଶୁଭାଇ ?

ବଶୁ—ଭାଇ ! ହୁଁ ହୃଦୟର କୋଉ କୋଣରୁ ଆଜି ଏ ଦରଦ ଉଚ୍ଛୁଳି ପଡ଼ିଲା ଲିଲି ? ଏତେ ହଠାତ୍ ଆତ୍ମ ସମର୍ପଣ କରି ଦେଉଛ ଯେ ? ଆଜି ଯଦି ଏଇଟିକୁ ମୋର ଉପକାର ବୋଲି ଭାବୁଥାଅ—ସେଇଟା ଭୁଲ—କାରଣ ବନ୍ଧନମୁକ୍ତରେ ମୁଁ କଷ୍ଟ ପାଉନି—ମୁଁ ପଥର ପାଲଟି ଯାଇଛି ଲିଲି—ମୋ କାମ ମଧ୍ୟ ସରି ଯାଇଛି—ହଁ, ମୁଁ ଯାଉଛି—କିନ୍ତୁ ତୁମର ଏକା ଯିବା ନିରାପଦ ନୁହେଁ । ଚାଲ ମୁଁ ତୁମକୁ ଘରେ ଛାଡ଼ି ଦେଇ ଆସିବି ।

ଲିଲି—ତୁମେ ଆମ ଘରକୁ ଯିବ ବଶୁଭାଇ ?

ବଶୁ—ନିଶ୍ଚୟ ଯିବି, କାହିଁକି ଯିବନି ? ହେଲେ ମୁଁ ତ ଭୋଜଭାତ ଖାଇବାକୁ ଯାଉନି, ନିମନ୍ତ୍ରଣ ରକ୍ଷା କରିବାକୁ କି Dinner attend କରିବାକୁ ଯାଉନି । ଯାଉଛି ତୁମକୁ ଛାଡ଼ି ଦେବାକୁ

ତେଣୁ ନ ମିବ କାହିଁକି ? ହେଲେ ଆଉ ଦିନେ ମୁଁ ତୁମ ଘରକୁ ମିବ—ଟଙ୍କାଚେକ୍ସା କରିବାକୁ—ଶୁଣିଛି ତୁମର କୁଆଡ଼େ ବହୁତ ଟଙ୍କା ଅଛି—ମୋର ଟଙ୍କା ଦରକାର—ଟଙ୍କା, ସୁନା, ରୁପା, ଧନ ଦଉଲତ—ଆଉ କିଛି ନୁହେଁ ହଉ ତୁମେ ଚାଲ—(ବାହାରକୁ ଲକ୍ଷ୍ୟକରି) ଓ୍ୱ ଇଭର ! ମେମ ସାହେବ କୋ ଗାଡ଼ିମେ ବୈଠାଓ—(ଲିଲି ଚାଲିଗଲା ବିଶ୍ୱ ପଶୁପତିଙ୍କୁ ଉଠାଇ)

ବିଶ୍ୱ—କାହୁଁ ଲିଲି ! ଉଠୋ (ଉଠାଇ ଛିଡ଼ାକଲା) ଆରେ ମରଦ ନା କାମ କରୋ-ଫେନ୍ସ ଭଦ୍ରଖୋଲ ଭିତରେ ବେଇମାନ କାହିଁକି ? ଅଗର କୁଛ୍ କରନା ହୈ ତୋ, ମେରେ ହାତ ପର୍ ହାତ୍ ମିଲାଓ—ପକଡ଼ୋ ଛୁରି—ବେଇମାନ କାହିଁକା—ଲେ ମେ ତୁମ୍‌କୋ ହପ୍‌ପି ଟାଲ୍ ପହୁଁଚା ଦେତା ହୁଁ (କାନ୍ଧେଇ ନେଇ ଚାଲିଗଲା)

—:o:—

## ଷଷ୍ଠ ଦୃଶ୍ୟ

(ସ୍ୱପ୍ନକୁମାରଙ୍କ ଘର ଅଳିନ୍ଦ—କଥାବାର୍ତ୍ତା ହୋଇ ପ୍ରବେଶ କଲେ ସ୍ୱପ୍ନକୁମାର ଓ ମୀନା)

ସ୍ୱପ୍ନ—ନା, ନା, ମୀନା ! ଏ ସମ୍ପର୍କରେ ମୁଁ ତୁମର କୌଣସି ପରାମର୍ଶ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ—

ମୀନା—ତା ହେଲେ କ'ଣ ଏତେ ଗୁଡ଼ାଏ ଟଙ୍କା ମିମିଛି ମିବ ? ଆପଣ ଯଦି ଭାବୁଥାନ୍ତି, ସାଇ ନଜେ ଆସି ଆପଣଙ୍କ ଟଙ୍କା ଫେରାଇ ଦେବେ, ତାହେଲେ ଭୂଲ କରୁଚନ୍ତି—ନିଜର ଭଉଣୀ ହୋଇ ମୁଁ ମନା କରୁଛି—ଆପଣ ତାକୁ ଆଣି ଏଠି ରଖନ୍ତୁନି—ଆପଣ ମୋ କଥା ମାନିଲେନି—ଏବେ ଦେଖିଲେ ତ—ମୋର

ଅନୁରୋଧ, ବର୍ତ୍ତମାନ ସୁଦ୍ଧା ପୋଲିସ୍‌ରେ ଖବରଟା ଦେଲେ ଟଙ୍କାଟା ଆପଣ ନିଶ୍ଚୟ ଫେରି ପାଇବେ ।

ସ୍ୱପ୍ନ—ବାଘୁଣୁ ଲୁହା ଶିକୁଳି ଦେଇ ହୁଏତ ମୋର ଟଙ୍କା ଟା ଫେରି ପାଇପାରେ କିନ୍ତୁ ସେଥିରେ ତା'ର ପରିବର୍ତ୍ତନ କେବେହେଲେ ସମ୍ଭବ ନୁହେଁ । ମୋର ସାତ ହଜାର ଟଙ୍କା ଅପେକ୍ଷା ତୁମର ଭାଇଙ୍କର ସୁପ୍ତ ମନୁଷ୍ୟତ୍ୱର ମୂଲ୍ୟ ଢେର୍ ବେଶି ।

ମୀନା—ଆପଣ ଯେ କେମିତି ଏ କଳ୍ପନା କରୁଚନ୍ତି ମୁଁ ଭାବି ପାରୁନି ! ଯିଏ ଦୁନିଆର ଅବାଟକୁ ଯାଇ ସମସ୍ତ କୁକର୍ମ କରୁଛି ସିଏ ପୁଣି ସାଧୁ ପାଲଟି ଯିବ, ଅସମ୍ଭବ ! ଭାଇଙ୍କୁ ଆପଣ ଚିହ୍ନନ୍ତି ନାହାନ୍ତି—ସେ ଆଉ ମଣିଷ ହୋଇ ନାହାନ୍ତି—ପଶୁ ପାଲଟି ଯାଇଛନ୍ତି—ତାଙ୍କୁ ନିର୍ମମ ଶାସ୍ତି ଦରକାର—

ସ୍ୱପ୍ନ—ଆମର ଯତ୍ନ ପାଇଲେ ବୁଦ୍ଧି ବିବେକ ହୀନ ପଶୁପକ୍ଷୀ ଯଦି ବୋଲ ମାନି ପାରନ୍ତି ତମର ଭାଇ ମଣିଷ ନ ହେବେ ବା କାହିଁକି ?

ମୀନା—ଆପଣ ଯିନା ମୋ କଥା ମାନୁ ନାହାନ୍ତି—ମୁଁ ଆଉଠଉ କହି ରଖୁଚି, ଆପଣ ଯୋଉ ବାଟ ଧରିଚନ୍ତି, ସେଥିରେ କେବଳ ଏଇ ସାତ ହଜାର ନୁହେଁ ହୁଏତ ଆହୁରି କିଛି ଯିବ—ଏପରିକି ଆପଣଙ୍କର ଜୀବନ ମଧ୍ୟ ବିପନ୍ନ ହୋଇପାରେ ।

ସ୍ୱପ୍ନ—ଏକ୍‌ସପେରିମେଣ୍ଟ କରିବାକୁ ଗଲେ ବହୁ ଅର୍ଥ, ଶ୍ରମ ସାଧନା ବ୍ୟର୍ଥ ହୁଏ । ତାପାଇଁ ମୁଁ ପ୍ରସ୍ତୁତ । କିନ୍ତୁ ମୋ ର ଏଇ ଏକ୍‌ସପେରିମେଣ୍ଟ ସକ୍‌ସେସ୍‌ଫୁଲ ହେଲେ ମୁଁ କ'ଣ ପାଇବି ଜାଣ ମୀନା ? ଘରଚିକୁ ଜଳମଥ ଆବିଷ୍କାର କରି ଯାହା

ପାଇଥିଲେ ସ୍କଟ୍‌ଲାଣ୍ଡ୍‌ଗାମୀ, ଯାହା ପାଇଥିଲେ ଦୁର୍ଗମ ପଥର ଯାତ୍ରୀ ଡେଭିଡ୍‌ ସିଂ—

ମୀନା—ସେଇଆ ଯଦି ଆପଣଙ୍କର ଇଚ୍ଛା, ତା’ହେଲେ ସ୍ୱପ୍ନଙ୍କୁ ଆପଣଙ୍କର ଏକ୍‌ସପେରିମେଣ୍ଟର ଅସ୍ତ୍ର ରୂପେ ବ୍ୟବହାର ନ କରି ଅନ୍ୟ କାହାରିକୁ ତ କରି ପାରନ୍ତେ ।

ସ୍ୱପ୍ନ—ମୁଁ ଡାକ୍ତର—ସେ ମୋର ରୋଗୀ—ସେ ତମ ସ୍ୱାମୀ ବୋଲି ମୁଁ ଯେ ସେ ଭଳି ଗୋଟେ ରୋଗୀକୁ ହାତରୁ ଛାଡ଼ି ଦେବି ତା ହୋଇ ପାରେ ନା—

ମୀନା—ଆପଣ କଣ କହିବାକୁ ଚାହାନ୍ତି ଚୋରି କରିବା ଗୋଟାଏ ରୋଗ ?

ସ୍ୱପ୍ନ—ଏକ୍‌ଜାକ୍ଟ ମୀନା ! ବିଶେଷଜ୍ଞମାନେ ମତ ଦେଇଛନ୍ତି, ଅପରାଧ କରିବା ମଣିଷର ଗୋଟିଏ ରୋଗ । ତା ପୁଣି ନିଶ୍ଚୟ ଆରୋଗ୍ୟ କରାଯାଇ ପାରେ । ତୁମେ ନିଶ୍ଚିନ୍ତ ଥାଅ । ମୁଁ ମୋର ସାତ ହଜାର ଟଙ୍କା ନିଶ୍ଚୟ ଫେରି ପାଉଛି ।

ଶଙ୍କର୍ଷଣ—(ପ୍ରବେଶ କରି) ଗୋଟିଏ ମିନିଟି ସାର୍—ମୁଁ ଓ୍ୱାର୍ଡ଼ ଦେଇ କହୁଛି ସାର୍, ଟଙ୍କା ନିଶ୍ଚୟ ମିଳୁଚି—ଗୋଟେ ମିନିଟ ସାର୍, ଶୀଘ୍ର ଆସନ୍ତୁ, ମୁଁ ସବୁ କଥାବାର୍ତ୍ତା ହୋଇ ଆସିଛି—ଆପଣ ଶୀଘ୍ର ଆସନ୍ତୁ ସାର—

ସ୍ୱପ୍ନ—ମୋତେ ପୁଣି କୋଉଠିକୁ ଡାକୁଛନ୍ତି ?

ଶଙ୍କର—ଥାନାକୁ ସାର, Informationଟା ଦେଇ ଆସିବେ । ଗୋଟେ ମିନିଟ ଭିତରେ ସାତହଜାର ଟଙ୍କା ସମେତ ଅସାମୀକୁ ପୋଲିସ ବାନ୍ଧି ଆଣିବ ।

ସ୍ୱପ୍ନ—ଥାନାକୁ ଯିବା ପାଇଁ ଆପଣଙ୍କୁ କିଏ କହିଲା ଶଙ୍କର୍ଷଣ ବାବୁ ?

ଶଙ୍କର—ଜଣେ ନାଗରିକ ଭାବରେ ନିଜର ସାଧାରଣ ଜ୍ଞାନ ଖଟାଇ
 ମୁଁ ଥାନାରେ ଗୋଡ଼ ଦେଇଛି ସାର୍—

ସ୍ୱପ୍ନ—କିନ୍ତୁ, ମୁଁ ଯଦି କହେ ମୋର ଟଙ୍କା ଚୋରି ଯାଇନି । ଆପଣ
 ମିଛ ଖବର ନେଇ ପୋଲିସରେ ଦେଇଛନ୍ତି, ଆପଣଙ୍କର
 ଅବସ୍ଥା କଣ ହେବ ଭାବି ପାରୁଛନ୍ତି ?

ଶଙ୍କର—ସେ କଥା ମିଛ ସାର୍, ମୀନା ଦେବୀ ! କାହିଁକି ଆପଣ ଏ
 ଦୁଃସ୍ଥ କର୍ମଚାରୀଙ୍କୁ ଥାନାକୁ ଯିବାପାଇଁ ଅନୁପ୍ରାଣିତ କଲେ ?
 ସାରଙ୍କର ଇଚ୍ଛା ବିରୁଦ୍ଧରେ କାହିଁକି ମୋ କାନରେ ମନ୍ତ୍ର
 ଫୁଙ୍କିଲେ—ଏବେ ରକ୍ଷା କରୁ ନାହାନ୍ତି କାହିଁକି ?

ସ୍ୱପ୍ନ—ଆଉ କେବେ ଯେମିତି ଏପରି ନ କରନ୍ତି, ଯାଆନ୍ତୁ—

ଶଙ୍କର—ଆଉ କେବେ ଯେମିତି ମୋତେ ଆପଣ ଅନୁପ୍ରାଣିତ
 ନ କରନ୍ତି, ଆସୁଛି—(ଚାଲିଗଲେ)

ମୀନା—ଆପଙ୍କର ପରି ଲୋକ ଯେ ଏ ଭଳି ଗୋଟିଏ ସମାଜ
 ବିରୋଧୀ ଲୋକଙ୍କୁ ସମର୍ଥନ କରିବେ, ଏ କଥା ମୁଁ କେବେ ଭାବି
 ପାରୁନି । ଚୋର, ଖଣ୍ଡ, ଦାଗୀମାନଙ୍କୁ ପ୍ରଶ୍ରୟ ଦେଲେ ସମାଜର
 ନିରାପତ୍ତା ରହିବ ତ ?

ସ୍ୱପ୍ନ—ସ୍ଥୂଳ ମସ୍ତିଷ୍କ ନେଇ ଏବେ ତତ୍ତ୍ୱ ସମାଲୋଚନା କରନି ମୀନା ।
 ଜ୍ଞାନ ଭୂମିର ସୀମାବଦ୍ଧ କଳ୍ପନାରେ ଆଇନ, ଶାସ୍ତି ସବୁ କିଛି
 ବିଧାନ କରି ମଧ୍ୟ ଦେଶରେ ଅପରାଧୀମାନଙ୍କର ସଂଖ୍ୟା କମୁନି
 କାହିଁକି ? ବରଂ ଷ୍ଟାଟିସ୍ଟିକ୍ସରେ ଦେଖା ଯାଉଛି ଯେତେ
 କଠୋର ଶାସ୍ତି ଦେଲେ ମଧ୍ୟ ଅପରାଧ ସଂଖ୍ୟା ବଢ଼ିବାରେ
 ଲାଗିଛି । ବଡ଼ ବଡ଼ ବୈଜ୍ଞାନିକମାନେ ମତ ଦେଇଛନ୍ତି—ଅପରାଧ
 କରିବାର ମନୋବୃତ୍ତି ମଣିଷର ଗୋଟାଏ ରୋଗ ଏବଂ
 ମାନସିକ ଚିକିତ୍ସା ଦ୍ୱାରା ଅପରାଧୀକୁ ଆରୋଗ୍ୟ କରା ଯାଇ

ପାରେ । ତୁମ ଭାଇଙ୍କ ଉପରେ ମୁଁ ସେଇ ଚକାନ୍ତ ପ୍ରୟୋଗ କରୁଛି । ମୋର ଅନୁରୋଧ, ତୁମେ ମୋତେ ସାହାଯ୍ୟ କର । ତୁମେ ଡ଼ାକ୍ତରଖାନାକୁ ଯାଅ—ମୁଁ ଥାନାକୁ ଯାଇ ଦେଖେ ଶଙ୍କରଣ ବାବୁ କଣ କହୁଛନ୍ତି—ନଚେତ ମୋର ସମସ୍ତ ଚେଷ୍ଟା ପଣ୍ଡ ହେବ—(ଚାଲିଗଲେ)

—*—

## ୭ମ ଦୃଶ୍ୟ

କଲ୍ପ—Oh ! Stop it please ତୁମର କୌଣସି କଥା ମୁଁ ଶୁଣିବାକୁ ଚାହେଁ ନା—ଢେର ଢେର ଶିକ୍ଷା ହୋଇଗଲା—

ପଶୁ—ଆପଣ ଇମିତି ବ୍ୟସ୍ତ ହେଲେ ପରିସ୍ଥିତି ଆଦୌ ସମ୍ଭାଳି ହବନି—ଆମକୁ ଆଉ ଥରେ ସ୍ୱପ୍ନକୁମାରଙ୍କର ନିକଟକୁ ଯିବାକୁ ପଡ଼ିବ ।

କଲ୍ପ—ହଁ, ସେତିକି ଆଉ କାହିଁକି ବାକି ରହିଯିବ ? କଲ୍ପତରୁ ମହାନ୍ତି ନିଜେ ସ୍ୱପ୍ନକୁମାରଙ୍କର ଦ୍ୱାରସ୍ଥ ହେଲେ ଯାଇ ତୁମ ମନ ମାନିବ ।

ପଶୁ—ସ୍ୱପ୍ନକୁମାରଙ୍କର ଉଦ୍ଦେଶ୍ୟଟା କ'ଣ ଆମକୁ ଆଗ ବୁଝିବାକୁ ପଡ଼ିବ—

କଲ୍ପ—କଣ, କଣ ଆଉ ବୁଝିବ ପଶୁପତି—ଗୋଟିଏ ଦାଗୀ ଅସାମିର ଭଉଣୀକୁ ନେଇ ନିଜେ ପାଖରେ ଚାକିରି ଦେବାର ଅର୍ଥ କଣ ? ଏଥିରୁ କଣ ଉଦ୍ଦେଶ୍ୟ ବୁଝି ପାରୁନ ? ତାପରେ ଏଇଟା

କଣ ? (ହ୍ୟାଣ୍ଡନୋଟ ଦେଖାଇ) ଇମିତ ଗୋଟିଏ ହ୍ୟାଣ୍ଡ-ନୋଟ୍ କରି ପଠାଇ ଦେବାର ଉଦ୍ଦେଶ୍ୟ କ'ଣ ? ଆଜି ଟଙ୍କା ଦେବାର ନାକଚ ହୋଇଗଲା ବୋଲି, କଲ୍ୟାଣରୁ ମାଧବଙ୍କ ପାଖକୁ ହ୍ୟାଣ୍ଡନୋଟ୍ ପଠାଇ ଦେଇଛନ୍ତି । ଯୋଉଦିନ ଆମେରିକା ଯିବାପାଇଁ କୁଆଡ଼ୁ କଣ୍ଟା ପଇସା ନ ପାଇ ମୋ ପାଖରେ ଆସି ହାତ ପାତିଥିଲ, ସେ ଦିନ କଥା କଣ ଭୁଲିଗଲ ? ଅକୃତଜ୍ଞ—ବେଇମାନ—

ପଶୁ—ଆଃ ! ଆପଣ ଏତେଟା ଉତ୍ତ୍ୟକ୍ତ ହୁଅନ୍ତୁ ନ—ମୋ' କଥା ଟିକିଏ ଶୁଣନ୍ତୁ—

କଲ୍ୟ—ମୋତେ ନ ଶୁଣାଇ ଲିଲି ମୁହଁରୁ ଆଗ ନିଜେ ଶୁଣି ଆସିବ ଯାଅ—ସେ କିମିତି ଅପମାନିତ ହୋଇ ଫେରିଛି—

ପଶୁ—ମୁଁ ସବୁ ଶୁଣି ସାରିଛି ଆଜ୍ଞା—କିନ୍ତୁ ମୁଁ ଯାହା ଅନୁସନ୍ଧାନ କରି ଦେଖିଛି, ଏହା ମୂଳରେ ଲିଲି ଦେବୀ—ନିଜର ସ୍ୱାର୍ଥ ହାସଲ କରିବା ପାଇଁ ଏମିତି ଗୋଟାଏ ପରିସ୍ଥିତି ସୃଷ୍ଟି କରିଛନ୍ତି ।

କଲ୍ୟ—ତା'ର ମାନେ ? କ'ଣ ତୁମେ କହିବାକୁ ଚାହଁ ପଶୁପତି ?

ପଶୁ—ଆପଣ ହୁଏତ ମୋ' କଥା ବିଶ୍ୱାସ କରି ନ ପାରନ୍ତି—କିନ୍ତୁ ଏଇ କେତେଦିନ ହେଲା, ଲିଲି ଦେବୀଙ୍କର ଗତିବିଧି ମୁଁ ବରାବର ଲକ୍ଷ୍ୟ କରି ଆସୁଛି—ବେଳେ ବେଳେ ଲିଲି ଦେବୀ ନିଜର ମାନ ସମ୍ମାନ ଭୁଲିଯାଇ ସେଇ ବିଶୁଟା ସଙ୍ଗରେ ଦେଖା କରୁଛନ୍ତି—

କଲ୍ୟ—(ଚମକି) ପଶୁପତି ! ! ! ନା-ନା, ତା କେବେ ହୋଇ ପାରେନା—ଅସମ୍ଭବ ।

ପଶୁ—ମୁଁ ଜାଣେ ଆପଣ ମୋ' କଥା ବିଶ୍ୱାସ କରିବେ ନି । କିନ୍ତୁ ମୋର ଅନୁରୋଧ ଆପଣ ନିଜେ କିଛି ଦିନ ଲକ୍ଷ୍ୟ କଲେ ସବୁ ଜାଣିପାରିବେ । ମୁଁ ଦିନେ ଯାହା ସନ୍ଦେହ କରିଥିଲି—ଠିକ୍ ହୋଇଆ ହେଉଛି । ବିଶୁ ଆଜି ଆପଣଙ୍କର ଅବସ୍ଥାର ସୁଯୋଗ ନେବାକୁ ଯାଉଛି । ଆଉ ସ୍ୱପ୍ନକୁମାର ମଧ୍ୟ ପରୋକ୍ଷରେ ବିଶୁକୁ ସମର୍ଥନ କରୁଛନ୍ତି । କାରଣ ବିଶୁ ଆପଣଙ୍କର ସମସ୍ତ ସମ୍ପତ୍ତିର ଉତ୍ତରାଧିକାରୀ ହେଲେ, ସ୍ୱପ୍ନକୁମାର ତାଙ୍କ ଦଶ ହଜାର ଟଙ୍କା ଋଣରୁ ନିର୍ବିଘ୍ନରେ ମୁକ୍ତ ହୋଇ ପାରିବେ ।

କଳ୍ପ—କିନ୍ତୁ ଏ ଖବର ଜାଣି ତୁମେ ଏ ପର୍ଯ୍ୟନ୍ତ ନିଶ୍ଚିନ୍ତ ରହିଥିଲ କାହିଁକି ?

ପଶୁ—ସତ କହିବାକୁ ଗଲେ, ଲିଲି ଦେବୀଙ୍କ ବିଷୟରେ ଏତେବଡ଼ କଥା ମୁଁ ଆପଣଙ୍କ ଆଗରେ କହିବାକୁ ସାହାସ କରି ନଥିଲି । ତଥାପି—ପଶୁପତି ନିଶ୍ଚିନ୍ତ ରହି ନ ଥିଲା ଆଜ୍ଞା, ସମସ୍ତଙ୍କ ଗତିବିଧି ମୁଁ ବରାବର ଲକ୍ଷ୍ୟ କରୁଛି । ଆପଣଙ୍କର ଆତ୍ମସମ୍ମାନ ଉପରେ ଆଘାତ ଲାଗିବା ପୂର୍ବରୁ ଦରକାର ପଡ଼ିଲେ—ମୁଁ ସମସ୍ତଙ୍କୁ ଶେଷ କରିଦେବି ।

କଳ୍ପ—ସେୟା କର—ସେୟା କର ପଶୁପତି । ମୋ'ର ଆତ୍ମସମ୍ମାନ ଉପରେ ଆଘାତ ଦେବାପାଇଁ ଯେ ଷଡ଼ଯନ୍ତ୍ର କରୁଛି—ସେ ଯେ ହେଉ ନା କାହିଁକି ତାକୁ ଗୁଳି କରି ଦିଅ—ତୁମେ ଯାଅ ।

ପଶୁ—ଠିକ୍ ଅଛି ମୁଁ ଆସୁଛି ଆଜ୍ଞା—ମୋର କେବଳ ଗୋଟାଏ ଚିନ୍ତା । ଲିଲି ଦେବୀ ସକାଳୁ ବାହାରି ଯାଇଛନ୍ତି ଯେ, ଏ ପର୍ଯ୍ୟନ୍ତ ଫେରି ନାହାନ୍ତି—ଆଚ୍ଛା ମୁଁ ଦେଖେ । (କଳ୍ପଙ୍କରୁ

ବିବ୍ରତ ହୋଇ ବୁଲୁଥାନ୍ତି—ତା ପରେ ସେ କଣ ଖବର ଚେୟାର ଉପରେ ବସି ପଡ଼ିଲେ—ନୀରବତାରେ କିଛି ସମୟ କଟିଗଲା । ପଛେ ବାହାରୁ ବନ୍ଧୁକର ଶବ୍ଦ ଶୁଣାଗଲା— କଳ୍ପତରୁ ଆଶ୍ଚର୍ଯ୍ୟ ହୋଇ ଘରଆଡ଼େ ଚାହିଁଥାନ୍ତି । ଆସିଛି ବଶୁ ଘର ଭିତରୁ ଗୁଳି ମାଡ଼ ଖାଇ—ହାତରେ ଲାଗିଛି ଗୁଳିମାଡ଼—ଭିତରୁ ଶୁଭୁଛି କିଏ ? କିଏ ?)

କଳ୍ପ—କିଏ ? ବଶୁ ?

ବଶୁ—ନା—ମଉସା ! ମୁଁ ବଶୁ ନୁହେଁ । ତାକୁ ବଶ୍ରୁମୋହନ— ମୁଁ ଚୋରି କରିବାକୁ ଆସିନି—ଆସିଛି ଆତ୍ମରକ୍ଷା କରିବାକୁ ।

କଳ୍ପ—ଆତ୍ମରକ୍ଷା—ନମକ ହାରାମ୍—ପାଜି । ମୁଁ ତୋତେ ପୋଲିସରେ ଦେବି—(ଫୋନ ଉଠାଇବାକୁ ଗଲେ)

ବଶୁ—ଖବରଦାର ମଉସା, ମୁଁ ଆପଣଙ୍କୁ ଖୁନ କରିଦେବି । ଫୋନ ଛାଡ଼ି ଦିଅନ୍ତୁ—(ଫୋନ ଛଡ଼ାଇବା ବେଳେ କଳ୍ପତରୁ ଠେଲି ଦବାରୁ ବଶୁ ପଡ଼ି ଯାଇଛି—ତାର କ୍ଷତ ଜାଗାଟିରେ ବାଜି ଯିବାରୁ, ସେ ଚିତ୍କାର କରି ପଡ଼ି ଯାଇଛି)

କଳ୍ପ—(ଦେଖି)—ଏଁ—ଏ କଣ ରକ୍ତ । ଠିକ୍ ହୋଇଛି । ତତେ ଏ ଶାସ୍ତି ଠିକ୍ ହୋଇଛି । ତତେ ମୁଁ ପୋଲିସରେ ନିଶ୍ଚୟ ଦେବି । ଫୋନ୍ ଉଠାଇଲା ବେଳେ ପ୍ରବେଶ କରିଛି ଲିଲି— ବାବାଙ୍କୁ ବାଧା ଦେଇ ।)

ଲିଲି—(ଚିତ୍କାର କରି) ବାବା ! ବାବା ! ( ଫୋନକୁ ଚୁପିଧରି ) ବଶୁଭାଇ, ତୁମେ ଏଠୁ ପଳାଇ ଯାଅ । (ରକ୍ତ ଦେଖି) ଏଁ— ଏ କଣ ରକ୍ତ—ବାବା ! ବଶୁଭାଇ ତୁମେ ଚାଲିଯାଅ— ଚାଲିଯାଅ ଏଠୁ ।

ବଶୁ—ଧନ୍ୟବାଦ୍ ଲିଲି—ତୁମର ଏ ଋଣ କି ମୋତେ ଶୁଝିବାକୁ ପଡିବ । You did no less, Lili, You did no less. (ଚାଲିଗଲା) ।

କାଳୁ—ଲିଲି—ଏ ତୁ କଣ କରି ଚାଲିଚୁ ?—ମୋ ସ୍ନେହ ଆଦରର ସୁଯୋଗ ପାଇ ତୋର ଏତେ ଅଧଃପତନ ହୋଇଯାଇଛି । ପଶୁପତି ତା ହେଲେ ମୋତେ ଠିକ କହୁଥିଲା । ମୁଁ ଆଜି ନିଜ ଆଖି ଆଗରେ ତାର ପ୍ରମାଣ ପାଇଗଲି ।

ଲିଲି—ତୁମେ ହୁଅନ୍ତୁ ବାବା—ତୁମେ ହୁଅନ୍ତୁ—ପଶୁପତି ! ସେଇଟା ଗୋଟେ ଜାନୁଆର—ଶଇତାନ, ପଶୁ ! ଆପଣ ତାର ଅସଲ ରୂପ କେବେ ଦେଖି ନାହାନ୍ତି । ଏ ବଂଶର ସର୍ବନାଶ କରିବା ହେଉଚି ତାର ଲକ୍ଷ୍ୟ ।

କାଳୁ—(ଆଶ୍ଚର୍ଯ୍ୟ ହୋଇ)—ଲିଲି— ! ! !

ଲିଲି—ହଁ ବାବା—ସ୍ୱପ୍ନକୁମାରଙ୍କ ବିରୁଦ୍ଧରେ ପରାମର୍ଶ କରିବାକୁ ମୋତେ ତା ନିଜ ଘରକୁ ଡାକି ନେଇ ମୋର ସର୍ବନାଶ କରିବାକୁ ବସିଥିଲା ବାବା ! କିନ୍ତୁ ଏଇ ବଶୁ—ଏଇ ଆପଣଙ୍କର ଡ୍ରାଇଭର ବଶୀମୋହନ ମୋତେ ରକ୍ଷା କରିଚି—ତୁମ ବଂଶର ମାନ ସମ୍ମାନ ରକ୍ଷା କରିଚି ।

କାଳୁ—କିନ୍ତୁ ଏ ସବୁ ମୋତେ ଆଗରୁ ନ କହି, ଆଜି ପର୍ଯ୍ୟନ୍ତ ତୁ ନୀରବ ରହିଥିଲୁ କାହିଁକି ?

ଲିଲି—ଘୃଣା ଆଉ ଲଜ୍ଜ୍ୟାରେ ମୋର ମୁଣ୍ଡ ତଳକୁ ହୋଇ ଯାଇଥିଲା ବାବା । ସେଥିପାଇଁ କହି ପାରି ନ ଥିଲି—କିନ୍ତୁ ଏବେ ପଶୁପତିର ଷଡ଼ଯନ୍ତ୍ର ଆଉ ବଶୁଭାଇଙ୍କ ପ୍ରତି ଆପଣଙ୍କର ଅନ୍ୟାୟ ଦେଖି, ମୁଁ ଆଉ ନୀରବ ରହି ପାରିଲି ନି ବାବା—ନୀରବ ରହି ପାରିଲି ନି—

କଲ୍ଟୁ—ଲିଲି ! ଏସବୁ କଣ ହୋଇଯାଉଛି ଲିଲି ! ମୁଁ ଏସବୁ କଣ ଶୁଣୁଛି—ଏଇଟା କଣ ମୋର ଭାଗ୍ୟ ?

ଲିଲି—ଭାଗ୍ୟ ନୁହେଁ ବାବା, ନିଜ ଅଜବା କର୍ମଫଳ । ଟଙ୍କାର ମୋହରେ ଆଜି ଆପଣ ଅନ୍ଧ ହୋଇଛନ୍ତି ବାବା ! ଅତୀତକୁ ଥରେ ଫେରି ଚାହାନ୍ତୁ ବାବା—କେତେ ଶାନ୍ତ, ସୁନ୍ଦର ଥିଲା ଆମର ଅତୀତ । ସାତଲକ୍ଷ ଟଙ୍କା ଲଟାରୀ ଜିଣିବା ପରେ ପରେ ଆପଣ କେତେଗୁଡ଼ାଏ ସ୍ୱାର୍ଥାପଘାତକଙ୍କ ଜାଲରେ ପଡି ଆପଣଙ୍କର ମଣିଷତ୍ୱକୁ ପାଶୋରି ଦେଇଛନ୍ତି । ଆପଣଙ୍କ ସାଙ୍ଗରେ ମୁଁ ମଧ୍ୟ ଖୁବ୍ ଆନନ୍ଦରେ ଭାସି ଯାଉଥିଲି ବାବା ! କିନ୍ତୁ ଆଜି ଏ ଶଇତାନ ଗୁଡ଼ାଙ୍କର ଚରିତ୍ର ପାଇଁ ମୁଁ ମୋର ଚେତନା ଶକ୍ତି ଫେରି ପାଇଛି ବାବା !

ମୋର ଚେତନା ଶକ୍ତି ଫେରି ପାଇଛି—(କହି କହି ଭିତରକୁ ଚାଲିଗଲେ ।)



## ୮ମ ଦୃଶ୍ୟ

(ବିଶୁଘର ଅଗଣା—ହାତରେ ବ୍ୟାଣ୍ଡେଜ ଭିଡ଼ା ହୋଇ ପ୍ରବେଶ କରନ୍ତି ବିଶୁ—ଖୁବ୍ ବେଶି ମଦ ପିଇଛି ।

ବିଶୁ—ମୀନା ! ବାବୁଆ ! ବୋଉ ! ( କେହି ଶୁଣିଲେ ନାହିଁ ଚିତ୍କାର କରି ପୁଣି ଡାକନ୍ତି ) ବୋଉ ! ( ବୋଉ ଆସିଛନ୍ତି ) ମୀନା ନାହିଁ, ବୋଉ ?

ବିଶୁ ମା—( ନୀରବ, କାରଣ ବିଶୁ ମଦ ଖାଇ ଥିବାର ସେ ଜାଣି ପାରିଛନ୍ତି । )

ବଶୁ—କ'ଣ ବୁଝିପାରୁନୁ ମୁଁ କ'ଣ ତତେ ପଚାରୁଚି ?

ବଶୁ ମା—କଣ ? (ରାଗରେ) କ'ଣ କେ ପଚାରୁଚୁ ?

ବଶୁ—ମୁଁ ପଚାରୁଚି ମୀନା କାହିଁ ?

ବଶୁ ମା—ସେଥିରେ ତୋର କଣ ଅଛି ?

ବଶୁ—କଣ କହିଲୁ ? ମୋର କଣ ଅଛି ?

ବଶୁ ମା—ହଁ ତୋର କ'ଣ ଅଛି । ମୀନା ତୋର କିଏ ? ତୁ କାହିଁକି ତା କଥା ପଚାରିବୁ ? ରାତିଦିନ ହାଡ଼ଭଙ୍ଗା ମେହନତ କରି ସେ ଯାହା ହେଲାଣ—ସେ ଯୁଆଡ଼େ ଗଲା, ତୋର କଣ ଅଛି ? ତୁ ଯା ପଳା ମୋ ଆଗରୁ । (କହି ଫେରିଯାଉଥିଲେ)

ବଶୁ—ବୋଉ ! ମୋତେ ସଫା କହ, ଏତେ ରାତିରେ କୁଆଡ଼େ ଯାଇଚି ମୀନା ? ତା ନ ହେଲେ ମୁଁ ସମସ୍ତଙ୍କୁ ଗୋଟି ଗୋଟି କରି ମାରି ପକେଇବି—

ବଶୁ ମା—( ବଶୁର ଦୁଇହାତକୁ ଧରି ହଲେଇ ) କଣ କହିଲୁ ମାରିବୁ ? ମାର୍, କେତେ ମାରିପାରିବୁ ମାର—ମାରୁନୁ—ଠିଆ ହୋଇ ରହିଲୁ କାହିଁକି ? (ଜୋରରେ ହଲେଇ ଦେଇ)

ବଶୁ—ଆଃ ( ହାତକୁ ଧରି ତଳେ ବସି ପଡ଼ିଲା ) ବୋଉ !

ବଶୁ ମା—(ଷତ ଜାଗା ଦେଖି) ଏଁ ଇଏ କଣ ? ଆରେ ଏ ତ ଖାଲି ରକ୍ତ ଗୁଡ଼ାକ, କଣ ହେଲାରେ ବଶୁ । କଣ ହେଲା ବାବା କଣ ହେଲା ତୋର··· ·····

ବଶୁ—ବୋଉ ମୁଁ ଚୋରି କରୁଚି-ମୁଁ ମଦ ଖାଇଚି—ମୁଁ ଡକାୟତି କରୁଚି । ହେଲେ ମୀନା କଣ କଲା ବୋଉ ! ମୀନା କଣ କଲା ମୁଁ କାହାପାଇଁ ଆଜି ଚୋର ହୋଇଚି—ହେଲେ ମୀନା ଠିକ୍

କରଣ—ମୋ ପରି ଜଣେ ଚୋର ଦଗାବାଜର ଉଉଣୀ ଆଉ କଣ କରନ୍ତା ?

ବଣ୍ଡୁମା—କଣ ହେଉଛି ରେ ବାପା ? କଣ ହେଉଛି ତୋର—ଏତେ ରକ୍ତ !

ବଣ୍ଡୁ—କଣ ଆଉ ହେବ ବୋଉ-ମୀନା ସେଠି ବ୍ଲେକମ କରୁଛି ବୋଉ-ତୋ'ର ସରଳତାର ସୁଯୋଗ ନେଇ ମୀନା ଆମେରିକା ଫେରନ୍ତା ଡ଼ାକ୍ତର ସ୍ୱପ୍ନକୁମାର ପାଖରେ ନିଜର୍ ବର୍ଣ୍ଣନା କରି ପଇସା ଆଣୁଛି । ହେଲେ ମୁଁ ତାକୁ ସହଜରେ ଛାଡ଼ିବି ନି ବୋଉ ! ମୁଁ ଆଜି ସେ ଡ଼ାକ୍ତର ଓ ମୀନା ଦୁଇ ଜଣଙ୍କୁ ଜୀବନରେ ମାରି ଦେବି—

ବଣ୍ଡୁମା—ନାଇଁରେ ବାବା, ତୋର କାହାରିକୁ ମାରିବା ଦରକାର ନାହିଁ । ତୁ ମୋତେ ମାରିଦେ—ମୁଁ ଏ ସବୁ ଶୁଣି ପାରୁନି—ସେଥିପାଇଁ ପୋଡ଼ା ମୁହଁ ରୋଗୀ ଜଟିଳା ବାହାନାରେ ନିତି ରାତିରେ ଡ଼ାକ୍ତରଖାନାରେ ଯାଇ ରହୁଛି—

ବଣ୍ଡୁ—କଣ କହିଲୁ ବୋଉ, ରାତିରେ ଡ଼ାକ୍ତରଖାନାରେ ରହୁଛି—ତୁ ମତେ ଆଜି ପର୍ଯ୍ୟନ୍ତ ଏ କଥା କହି ନ ଥିଲୁ କାହିଁକି ? ତୁ ଥା' ବୋଉ ମୁଁ ଯାଉଛି···

ବଣ୍ଡୁମା--ହେଲେ ତୁ ଏ ଅବସ୍ଥାରେ କୁଆଡ଼େ ଯାଆନାରେ ବାବା ।

ବଣ୍ଡୁ—ସେ କଥା ନୁହେଁ ବୋଉ, ତୁ ମୋର ଏ ହାତଟାକୁ ଦେଖି ଅଧୈର୍ଯ୍ୟ ହୋଇ ଯାଉଛୁ । ହେଲେ ମୁଁ ମରିନି ବୋଉ—ମୁଁ ମରିନି—ମୋ ଛାତି ଭିତରଟା ଜଳିଯାଉଛି ବୋଉ— ତୁ ମୋତେ

ଗ୍ରନ୍ଥ ଦେଇ ବୋଉ ତୁ ମୋତେ ଗ୍ରୁଡ଼ଦେ—(ଝଡ଼ ବେଗରେ ପ୍ରସ୍ଥାନ )



## ଶେଷ ଦୃଶ୍ୟ

(ସ୍ୱପ୍ନକୁମାରଙ୍କ ଡ଼ାକ୍ତରଖାନା—ଗୁଳିମାଡ଼ ଖାଇ କ୍ଷତ ଅବସ୍ଥାରେ କଳ୍ପତରୁ ବାବୁଙ୍କ ଘରୁ ଫେରିବା ଦିନ ଘଟଣା—ରାତ୍ର ପ୍ରାୟ ବାରଟା ଅତି ସନ୍ତର୍ପଣରେ ପ୍ରବେଶ କରିଚି ବଶୁ ଡ଼ାକ୍ତରଖାନା ଭିତରେ ହାତରେ ଛୁରୀ—ସ୍ୱପ୍ନକୁମାରଙ୍କୁ ଖୁନ୍ କରିବା ଉଦ୍ଦେଶ୍ୟରେ ଆସିଚି ହଠାତ୍ ବାହାରେ କାହା ଚିତ୍କାର ଶୁଣି ବଶୁ ଲୁଚିଗଲା ଘର ଭିତରେ ବାହାରୁ ପ୍ରବେଶ କରିଚନ୍ତି ସ୍ୱପ୍ନ କୁମାର—ଧରି ଆଣିଛନ୍ତି ଦାଗୀବୁଢ଼ାକୁ ସେ ଲୁହା ଶିକୁଳିରେ ଶୃଙ୍ଖଳିତ )

ଦାଗୀ—ମୋତେ ଗ୍ରୁଡ଼ଦିଅ । ମୋତେ ଗ୍ରୁଡ଼ଦିଅ ।

ସ୍ୱପ୍ନ—କିଏ ତୁମେ ? କୁହ କିଏ ତୁମେ ?

ଦାଗୀ—ମୁଁ ଜଣେ ବୁଢ଼ା ଭିକାରୀ—

ସ୍ୱପ୍ନ—ମିଛକଥାତୁମେ ମୋତେ ଠକିବାକୁ ବସିଚ । ତୁମର ପ୍ରକୃତ ପରିଚୟ ନ ଦେଲେ ବି ମୁଁ ତୁମକୁ ଜାଣେ । ତୁମେଇ ଚୋରୀ କରିଚ—

ଦାଗୀ—ନା, ମୁଁ ଚୋରୀ କରିନି ।

ସ୍ୱପ୍ନ—ନିଜେ ଚୋରୀ ନ କଲେ ବି ଅନ୍ୟଦ୍ୱାରା ଚୋରୀକରାଇଚ ତୁମେ ଚୋରୀ କରିବା ଲାଗି ପରାମର୍ଶ ଦେଇଚ ।

ଦାଗୀ—ମୁଁ ଚୋର ହେଲେ, ତୁମେ ଡାକୁ—ତୁମେ ଖୁନୀ—କଳ୍ପତରୁ ଟଙ୍କାରେ ଆମେରିକା ଯାଇଥିଲ କିଏ ? ଆମେରିକାରୁ ଫେରି କଳ୍ପତରୁକୁ ଫାଙ୍କି ଦେଲା କିଏ ? ବଶୁର ଟଙ୍କାରେ

ପାଞ୍ଚ ଲକ୍ଷ ଟଙ୍କା ଲଟେରୀ ଜିତି, କଳ୍ପତରୁ ବସ୍ତୁକୁ କିଣି କଲି ? ଗୁରକଶୀ ଖଣ୍ଡେ ପାଇଁ ଦୌଡ଼ି ଦୌଡ଼ି ବସ୍ତୁ ଗୋଡ଼ରେ ବଣ୍ଡି ପଡ଼ଗଲା । ହେଲେ କେହି ତାକୁ ଆଶ୍ରୟ ଦେଲେନି ଶିକ୍ଷା ଟାଣି ପେଟ ପୋଷିବା ପାଇଁ ଖଣ୍ଡେ ରିକ୍ସା ବି ଦେଲେନି—ତୁମେ ସବୁ ଚୋର ! ଡାକୁ ! ସଇତାନ ! କିନ୍ତୁ ବର୍ତ୍ତମାନ । ଯାଅ ଦେଖିବ—ବସ୍ତୁ କେମିତି ଆରାମରେ ରହିଛି— Hindustan,' Landmaster' ହୁଁ-ହୁଁ ହୁ—

ସ୍ୱପ୍ନ—କିନ୍ତୁ ବଞ୍ଚିବା ପାଇଁ ତୁମେ ଏ ହୀନ କାର୍ଯ୍ୟ କରୁଛ କାହିଁକି ?

ଦାଗୀ—ସମାଜରେ ପ୍ରତିଷ୍ଠା ପାଇଁ ଅର୍ଥ ପରି ମାନଦଣ୍ଡ ହୁଏ—ମୁଁ ଚୋରୀ କଲେ କ୍ଷତି କ'ଣ ?

ସ୍ୱପ୍ନ—ବକ୍ ବକ୍ ବନ୍ଦକର, ଜାଣ, ମୋ' ହସ୍‌ପିଟାଲରେ ପଚିଶ ଜଣ ଲୋକ କାମ କରନ୍ତି, ତୁମେ ଯଦି ଚୋରୀ କଥା ସ୍ୱୀକାର ନ କର, ବର୍ତ୍ତମାନ ମୁଁ ସମସ୍ତଙ୍କୁ ଡାକି ତୁମକୁ ମାଡ଼ ଦେବି— ମରଣାନ୍ତକ ମାଡ଼...

ଦାଗୀ—କିନ୍ତୁ କାହିଁକି— ? କାହିଁକି ତୁମେ ମୋତେ ମାରିବ (ଧମକାଇ )—ଏ ଖବରଦାର—ମୋତେ ମାରିବ ?

ସ୍ୱପ୍ନ—ଖାଲି ମାଡ଼ ନୁହେଁ—ଦରକାର ପଡ଼ିଲେ ମୁଁ ତୁମକୁ ଖୁନ୍ କରି ଦେବି—(ଗୁଳିକୁ ଧରି)

ଦାଗୀ—ଖୁନ୍ କରିବ ? ତୁମେ ମୋତେ ଖୁନ୍ କରିବ ।

ସ୍ୱପ୍ନ—ହଁ, ହଁ, ମୁଁ ତୁମକୁ ଖୁନ୍ କରିବି । (ଦାଗୀ—"ଏ" ବୋଲି ଗୋଟାଏ ଶବ୍ଦ କରି ଦୁଇ ହାତରେ ଟେବୁଲ ଉପରୁ

ଛୁରୀଟି ଉଠାଇ ନେଇ ଡାକ୍ତରଙ୍କ ଉପରକୁ ଉଠେଇଲେ—ଡାକ୍ତର ଧରି ନେଲେ ବାଗୀ ହାତକୁ । ବସ୍ତ୍ର ଖଣ୍ଡରୁ ଛୁରୀ ବାହାର କରି ଦୁଇ ପାହୁଣ୍ଡ ଆଗେଇଛି ଏବଂ ଏତିକିବେଳେ ଡାକ୍ତର ଜୋର କରି ବାଗୀ ହାତରୁ ଛୁରୀଟି ଛଡ଼ାଇ ନେଇଛନ୍ତି । ବାଗୀ ପାଖରୁ ଟିକିଏ ଗୁଞ୍ଜି ଲୁଞ୍ଜା ହେବା ଦେଖି ସ୍ୱପ୍ନ ପୁଣି ଲୁଚି ଯାଇଛି)

ସ୍ୱପ୍ନ—ତୁମଠାରୁ ଢେର ଆହୁରି ଅନେକ ବଳିଷ୍ଠ ଲୋକ ଏ ପୃଥିବୀରେ ଅଛନ୍ତି । ତୁମେ ଜାଣି ରଖ—ଏତେ ସାହସ ତୁମର । ତୁମେ ପୁଣି ମୋତେ ଖୁନ୍ କରିବ—ଭୀରୁ, କାପୁରୁଷ—

ବାଗୀ—ମୁଁ ଭୀରୁ ? ମୁଁ କାପୁରୁଷ ?

ସ୍ୱପ୍ନ—ଖାଲି ଭୀରୁ ନୁହଁ—ଦୁର୍ବଳ, ବିକୃତ ମସ୍ତିଷ୍କ Perveted ; କେଉଁଠି ନିହାତି ଦୁର୍ବଳ ଲୋକଙ୍କୁ ଖୁନ୍ କରି ପାରିଚ ବୋଲି ତୁମେ ମୋତେ ଖୁନ୍ କରି ଦେବ ? ଗୋଟାଏ ଅପରାଧୀର କଳଙ୍କ ନେଇ, ତୁମେ ଫେର ଖୁନ୍ କରି ଦେବ ଗୋଟାଏ ସତ୍ୟର ପ୍ରତୀକକୁ ?

ବାଗୀ—ମୁଁ ଚାହେଁ ସେହି ସତ୍ୟକୁ ଧ୍ୱଂସ କରି ଦେବାକୁ—ନିଶ୍ଚିହ୍ନ କରି ଦେବାକୁ—

ସ୍ୱପ୍ନ—ମିଛକଥା, ନିହାତି ମିଛକଥା । ଅନ୍ୟ ଅର୍ଥରେ ତୁମେ ଚାହଁ ସେହି ସତ୍ୟକୁ ପ୍ରତିଷ୍ଠା କରିବାକୁ । କିନ୍ତୁ ପ୍ରତିଷ୍ଠା କରିବାପାଇଁ ପ୍ରକୃତ ପନ୍ଥାଟା ତୁମେ ଭୁଲି ଯାଇଚ—ଆଉ ତା ସଙ୍ଗେ ସଙ୍ଗେ ଭୁଲି ଯାଇଚ ତୁମର Very PurPose of Life—ମନେ ମନେ ତୁମେ ଭାରି ଟଣୁଆଁ ନୁହେଁ—ସାମାଜିକ ଭାବେ ଅଲ୍କବ ଅନାଦୃତ, କୈବର୍ତ୍ତ ଘୃଣା ତୁମର

ମନୁଷ୍ୟତ୍ୱକୁ ବାରମ୍ବାର ଆଘାତ କରି ତୁମକୁ କରି ଦେଇଛନ୍ତି ପଶୁ । ସେହି ପଶୁତ୍ୱ ବଳରେ ତୁମେ ଭାବୁଛ ତୁମେ ଗୋଟାଏ ସାହି ପାଲଟି ଯାଇଛୁ । ତୁମ ଦେହରେ ଅଛି ମେସିନ୍—ଜେନର ଷ୍ଟିଡ଼ । ଅଛି ରକେଟର ସ୍ପିଡ଼—ଯାହା ବଳରେ ତୁମେ ଏ ଦୁନିଆରେ ସବୁ ସଇତାନ ଗୁଣ୍ଡାଙ୍କୁ ଧ୍ୱଂସ କରି ଦେବ—ପାରିବ ମୋ ଭଳି ଗୋଟାଏ ଗ୍ରେଟ୍ ସଇତାନକୁ ଶେଷ କରି ? Can you ?

ଯୋଗୀ—ନିଶ୍ଚୟ ପାରିବି ?

ସ୍ୱପ୍ନ—ପାରିବ ! Alright (ହାତକଡ଼ା ଖୋଲି ଦେଇ ଛୁରୀଟା ଦେଲେ) Come on—go ahead—(ଛୁରୀ ଉଠାଇଲା

ଯୋଗୀ—ଡ଼ାକ୍ତର ଆଖି ବୁଜିଦେଲେ—ଯୋଗୀର ହାତ ରହିଗଲା—ହାତରୁ ଖସିପଡ଼ିଲା ଛୁରୀଟି)

ହୁଁ ହୁଁ—ବର୍ତ୍ତମାନ ତୁମେ ବୁଝି ପାରୁଛ ତୁମେ କେତେ ଦୁର୍ବଳ କେତେ ଖାଲି । ତୁମେ ତଥ କେମିତି ସଇତାନ୍ ନୁହେଁ, ଶେର ନୁହେଁ ଖମା ନୁହଁ ମୁଁ ବର୍ତ୍ତମାନ Prove କରିଦେଇ ପାରିବ । ଖାଲି ସେତିକି ନୁହେଁ,—ମୋର ପରୁଶ ଜଣ ଲୋକ ତୁମକୁ ପିଟି ଚାଲିଥିବେ । ମୁଁ ଠିକ୍ ତୁମ ଛୁରୀତଳେ ଠିଆ ହେଇଥିବି—ତଥାପି ତୁମ ହାତ ଚାଲିବନି । କାରଣ ତୁମେ ନିଜେ ଯାହା ବୋଲି ଦୁନିଆକୁ କହି ଚାଲିଚ, ତୁମେ ତା ନୁହେଁ । ତୁମେ ଗୋଟାଏ ରୋଗୀ । ଜୀବନରେ ଧକ୍କା ଖାଇ ତୁମେ ବିକୃତ ମସ୍ତିଷ୍କ—Perverted—

ଯୋଗୀ—ଡ଼ାକ୍ତର ! !

ସ୍ୱପ୍ନ—ଆଛା ବୁଝା ! ମୁଁ ଯଦି ତୁମକୁ ମୋ ପାଖରେ ରଖି ତୁମର ସମସ୍ତ ଅଭାବ ଦୂରକରି ଖାଇବାକୁ ଦେଇ ପିନ୍ଧିବାକୁ

ଦେଇ, ତୁମର ଶ୍ରେଷ୍ଠ ଭାଇ ପରି ସେବା କରେ। ତୁମେ କଣ ଗ୍ରହଣ କରିବନି ? ତୁମେ ମୋ କଥା ମାନିବ ନି ?

ବାଗୀ—(ନୀରବ)

ସ୍ୱପ୍ନ—ତୁମେ ନୀରବ ରହିଲେ, କିନ୍ତୁ ମୁଁ ତୁମକୁ ଛାଡ଼ିବି ନା। ମୁଁ ଡ଼କ୍ଟର୍ ରୋଗୀକୁ ଚିକିତ୍ସା କରିବା ମୋର କର୍ତ୍ତବ୍ୟ। ଆଜି ସେହି ଚିକିତ୍ସା ବଳରେ ମୁଁ ଆମ ସମାଜର ଗୋଟାଏ ବ୍ୟାଧିକୁ ସମ୍ପୂର୍ଣ୍ଣ ନିର୍ମୂଳ କରି ଦେବାକୁ ଚାହୁଁଛି। ତୁମେ ମତେ ସାହାଯ୍ୟ କରିବନି। ବହୁଦିନୁ ମୁଁ ତୁମ ପରି ଗୋଟାଏ ପୁରାତନ ରୋଗୀର ଅପେକ୍ଷାରେ ଥିଲି। ତୁମ ଧାରଣା ମୁଁ ତୁମକୁ ଧରି ଆଣିଛି। କିନ୍ତୁ ନାହିଁ—ମୁଁ ତ—ଆଣିନି—ଯେଉଁମାନେ ତୁମକୁ ଧରି ଆଣିଥିଲେ, ତାଙ୍କୁ ସମସ୍ତଙ୍କୁ ମୁଁ ଗୋଟି ଗୋଟି କରି ବରଖାସ୍ତ କରି ଦେଇଛି ବରଂ ସେମାନଙ୍କ କବଳରୁ ତୁମକୁ ଖସାଇ ଆଣିଥିଲି ତୁମ ହାତରୁ 'ଲୁହାଶିକୁଳିଟା' ଖୋଲି ଦେଇ, ମୋ ଅନୁଷ୍ଠାନ ତରଫରୁ କ୍ଷମାଭିକ୍ଷା ମାଗି ନେବା ଲାଗି—ମୋତେ କ୍ଷମା କରିବନି "କବି"

ବାଗୀ—କବି ?!!!

ସ୍ୱପ୍ନ—ମୁଁ ସବୁ ଜାଣେ, ତୁମ ବିଷୟରେ ମୁଁ ସବୁ ତଥ୍ୟ ସଂଗ୍ରହ କରି ପାରିଛି—ବହୁ କଷ୍ଟ ସ୍ୱୀକାର କରି। ତୁମେ ଥିଲ ଜଣେ ମହାନ କବି। ତୁମର ବିପ୍ଳବାତ୍ମକ ଲେଖା ପାଇଁ ତୁମକୁ ଜେଲ ଭୋଗିବାକୁ ପଡ଼ିଲା। ତୁମକୁ ଦଣ୍ଡରୁ ରକ୍ଷା କରିବାକୁ ଯାଇ, ଏ ମାନବ ପ୍ରାଣର ଭାଇ ତୁମର ସର୍ବସ୍ୱାନ୍ତ ହୋଇ ଆତ୍ମହତ୍ୟା କଲା ପରେ—ତୁମେ ସାଜିଛ ପଶୁ—ଶଇତାନ—ରାକ୍ଷସ। କିନ୍ତୁ ମୋ ଭଳି ଗୋଟାଏ

ଗ୍ରେଟ ସଇତାନକୁ ତୁମେ ମାରି ପାରିଲନି ତୁମ ହାତରେ ଛୁରି ଥାଇ ମଧ୍ୟ । ସ୍ୱର୍ଗ ଜୟ ତୁମର ଅସମ୍ଭବ ହୋଇ ପଡ଼ିଲା । ରାକ୍ଷସ ! ସ୍ୱର୍ଗ ଜୟ ତୁମର ଅସମ୍ଭବ ହୋଇ ପଡ଼ିଲା—

ଦାଗୀ—ଡ଼ାକ୍ତର ! ! (କୁଣ୍ଢାଇ ପକାଇଲେ) ସ୍ୱର୍ଗ ଜୟ ମୋର ନହୋଇ ପାରେ ଡ଼ାକ୍ତର, ସ୍ୱର୍ଗ ଜୟ ମୋର ହୋଇ ପାରେ ତୁମର ଜୀବନ ଦର୍ଶନରେ ମୁଁ ଦେଖି ପାରୁଛି ମୋର ସ୍ୱର୍ଗ । କିନ୍ତୁ ଡ଼ାକ୍ତର ! ବିଶ୍ୱମୋହନ ! ବିଶ୍ୱମୋହନଟା ଯେ ନର୍କରେ ପଡ଼ି ଛଟପଟ କରୁଛି । ନା, ନା, ଡ଼ାକ୍ତର ! ମୁଁ ତାକୁ ଫେରାଇ ଆଣିବି, ମୁଁ ତାକୁ ଫେରାଇ ଆଣିବି (ଝଡ଼ ବେଗରେ ଦାଗୀ ଚାଲିଗଲା । ନିଶ୍ଚଳ ହୋଇ ଠିଆ ହୋଇ ରହିଥାନ୍ତି ଡ଼ାକ୍ତର ! ଟିକିଏ ପରେ ମୀନା ଆସିଛି ଭିତରୁ—ଛୁରୀ ଭିତରୁ ସ୍ୱପ୍ନକୁମାରଙ୍କୁ ମାରିବାକୁ ଆସିଥିଲାବେଳେ ମୀନାକୁ ଦେଖି ଲୁଚିଗଲା)

ସ୍ୱପ୍ନ—କିଏ ? ମୀନା ?

ମୀନା—ମୁଁ ଜାଣିଥିଲି ଆପଣଙ୍କୁ ଗୁଡ଼ ଦେବେ—ଆପଣ ଯଦି ଗ୍ରେଟ, ଡ଼ାକୁ, ଖୁନି ଆସାମୀମାନଙ୍କୁ ନେଇ ପରୀକ୍ଷା ଆରମ୍ଭ କରିବାକୁ ଚାହାନ୍ତି, ତା'ହେଲେ ମୋତେ ଛାଡ଼ ଦିଅନ୍ତୁ ।

ସ୍ୱପ୍ନ—କ'ଣ ମୁଁ କିଛି କହିବା ପୂର୍ବରୁ ଓଲଟି ମୋ ଉପରେ ତୁମେ charge କରିବାକୁ ଆରମ୍ଭ କରି ଦେଲଣି ? କିନ୍ତୁ ତା ପୂର୍ବରୁ ମୁଁ ତୁମକୁ ପଚାରୁଛି ମୀନା ! ମୋ ଅନୁପସ୍ଥିତିରେ ସୁଯୋଗ ନେଇ, ତୁମେ ସେ ବୁଢ଼ାକୁ ବାନ୍ଧି ଆଣିଥିଲ କାହିଁକି ? କି ଅଧିକାର ଥିଲା ତୁମର ? ଏଇ ଅଭିଯୋଗରେ

ମୁଁ ଯଦି ତୁମକୁ ସୋଲିସରେ ଦିଏ ? ଶେଷର ହେଉଛି ମୋର—ତୁମର ନୁହେଁ । ମୋର Personal affairs ନେଇ ତୁମେ କାହିଁକି ଏତେ ବ୍ୟସ୍ତ ହୋଇ ଉଠୁଚ ? କାହିଁକି ?

ମୀନା—ସେଥିପାଇଁ ମୁଁ ଗୃହେଁ, ଏ ଅନୁଷ୍ଠାନରୁ ଚିରଦିନ ପାଇଁ ବିଦାୟ ନେବାକୁ—

ସ୍ୱପ୍ନ—(ରାଗି) Stop—I say stop—foolish girl—(ମୀନା ନୀରବରେ ଛିଡ଼ା ହୋଇ ରହିଥିଲା ) ମୀନା ! ଏ ଯୁଗର ଝିଅ ତୁମେ ମୀନା—ବିପ୍ଳବ ଆଣିବ ତୁମେ, ପରିବର୍ତ୍ତନ ଆଣିବ ତୁମେ ?

ମୀନା—ନିଜ ଜୀବନକୁ ବିପନ୍ନ କରି ଆପଣଙ୍କ ପାଖରେ ମୁଁ ରହିପାରିବି ନି ।

ସ୍ୱପ୍ନ—ଦଶଟା ଅବହେଳିତ, ଅମଣିଷଙ୍କୁ ମଣିଷ କରିବାକୁ ଯାଇ ଯଦି ତୁମର ମୃତ୍ୟୁ ଘଟେ, ସେ ମୃତ୍ୟୁରେ ତମେ ହେବ ବିଜୟିନୀ । ତମେ ତାକୁ ସ୍ୱାଗତ କର ମୀନା ! କହି ପାରିବ ମୀନା, କୋଉ ସ୍ୱାର୍ଥ ଥିଲା ବାର ବର୍ଷର ଦେଥିରିଆ ଟୋକା ଧରିମାରି ? ନିଜର ପାଇଁ ତମର ଜନ୍ମ ନୁହେଁ ମୀନା—ତୁମର ଜନ୍ମ ଅନ୍ୟ ପାଇଁ, ତମେ ଏ କଥା ଭୁଲି ଯାଅ ନା—

ମୀନା—କିନ୍ତୁ ମୋର ଅନିଚ୍ଛା ସତ୍ତ୍ୱ ଆପଣ କଣ ମୋତେ ଧରି ବାନ୍ଧି ରଖିବେ ? ଗୃହକର୍ମ ମୋର ଦରକାର ନାହିଁ । ମୋତେ ବିଦାୟ କରି ଦିଅନ୍ତୁ—

ସ୍ୱପ୍ନ—ବେଶ୍, ତୁମେ ଏଇ ମୁହୂର୍ତ୍ତରେ ଚାଲି ଯାଇ ପାର ମୀନା— ଯାହାପାଇଁ ତୁମେ ମୋର ଦରଜା ଖୋଲି ଥିଲ, ମୁଁ ନୁହେଁ—

ମୀନା—ଡାକ୍ତର ବାବୁ ! ! !

ସ୍ୱପ୍ନ—ତୁମର କେତେ ଦିନର ଦରମା ବାକି ଅଛି କୁହ ? ମୁଁ ବର୍ତ୍ତମାନ Clear କରି ଦେଉଛି (ମୀନା ଠିଆ ହୋଇ ଛୋଟ ପିଲାଟି ପରି କାଇଁ କାଇଁ ହୋଇ କାନ୍ଦି ଉଠିଲା, କିଛିକ୍ଷଣ ନୀରବ ରହି, ପରେ ପାଖକୁ ଯାଇ)—ଜାଣେ ମୀନା ! ମୋ ପ୍ରତି ତୁମର ଅଗାଧ ଭକ୍ତି, ଅସୀମ ମମତା, ତାଙ୍କୁ ତୁଟାଇ ଦେଇ ତମେ ମତେ ଛାଡ଼ିଯାଇ ପାରିବ ନା ତା ଛଡ଼ା ମୋର ଭୁଲ ରହିଲା କେଉଁଠି ? ମୋ ପାଖରେ ତୁମର ରହିବା ଦିନୁ ଆଜିଯାଏ ଭାବି ଗଲି—ମୀନା ଛୋଟ ଭଉଣୀଟିଏ ଭାବି ଯେଉଁ ସ୍ନେହ, ମମତା ଅଜାଡ଼ି ଦେଇ ଆସିଛି, ତାକୁ ତମେ ଅସ୍ୱୀକାର କରି ଚାଲିଯାଇ ପାରିବ, ସ୍ନେହ କାଙ୍ଗାଳ ଭାଇର ଅନୁରୋଧ ରକ୍ଷିବ ନା ?

ବଶୁ—(ସବୁ ଶୁଣୁ ଥିଲା—ଆଉ ଧୈର୍ଯ୍ୟ ଧରି ରହି ପାରିଲାନି— ଚିତ୍କାର କରି ଉଠିଛି) ଡାକ୍ତର ! ! !

ମୀନା—(ଅପ୍ରତ୍ୟାଶିତ ଭାବରେ ଛୁରି ହାତରେ ବଶୁକୁ ଦେଖି ଆତଙ୍କରେ ଶିହରି ଉଠିଲା )—ଭାଇ...

ବଶୁ—ସ୍ୱପ୍ନକୁମାରଙ୍କୁ ନିର୍ନିମେଷ ନୟନରେ ଚାହିଁ ରହିଲେ, ସ୍ୱପ୍ନକୁମାରଙ୍କ ବ୍ୟକ୍ତିତ୍ୱ ନିକଟରେ ବଶୁର ଶକ୍ତି ମନ ପରାଜୟ ସ୍ୱୀକାର କଲା, ଦୌଡ଼ି ଯାଇ ସ୍ୱପ୍ନକୁମାରଙ୍କୁ ଧରି ପକେଇ)

ବଶୁ—ମୋତେ କ୍ଷମା କର ଡ଼ାକ୍ତର । ମୁଁ ସଇତାନର ରୂପ ନେଇ ତମର ଭଳି ଦେବତା ର ଅସ୍ତିତ୍ୱ ଲୋପ କରିବା ଲାଗି ତୁମକୁ ଖୁନ୍ କରିବାକୁ ଆସିଥିଲି । ମୁଁ ମଣିଷ ହେବି ଡ଼ାକ୍ତର—ମୁଁ ମଣିଷ ହେବି—(ପିଲାଙ୍କ ଭଳି କାନ୍ଦି ଉଠିଲେ, ଆସ୍ତେ ଆସ୍ତେ ତା'ର ଚେତନା ଶକ୍ତି ଲୋପ ପାଇ ଆସୁଥିଲା ।)

ସ୍ୱପ୍ନ—ଦେଖିତ ମୀନା ! ଘୃଣା, ଅବହେଳା କରି ଲୁହାଶିକୁଳି ଦେଇ ସମାଜ ଯେଉଁମାନଙ୍କୁ ଆଜଯାଏ ବାଟକୁ ଆଣି ପାରି ନଥିଲା, ତାକୁ ବାଟକୁ ଆଣି ପାରିବ ଦୟା, କ୍ଷମା, ଆଉ ଭଲ ପାଇବା—ଖାଲି ବଶୁ ନୁହେଁ—ବଶୁ ଭଳି ଲକ୍ଷ ଲକ୍ଷ ଅପରାଧି ବାଟକୁ ଫେରି ଆସିବେ—ଯଦି ସେହି ମହାତ୍ମାଙ୍କର ମହାବାଣୀ ଅକ୍ଷରେ ଅକ୍ଷରେ ଆମେ ପାଳନ କରୁ—

"A criminal should betreated as a patient" (ସ୍ୱପ୍ନକୁମାର କୋଳେଇ ନେଲେ ବଶୁକୁ, ମୁଣ୍ଡ ଉପରେ ହାତ ବୁଲେଇ ଆଣୁ ଆଣୁ ନଇ ଆସିଲା ପରଦା)

ପରଦା

—*—